# ନୈବେଦ୍ୟ

( ସ୍ନିଗ୍ଧ ମଧୁର ଅଭିବ୍ୟକ୍ତ ଭରା ଏକ ସରଳ, ସୁନ୍ଦର ଓ ଅଭିନବ ଚଇଣ ମାଳା )

—ଭୂମିକା—

ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି, ଏମ୍. ଏ.

—ରଚନା—

କୁମାର ଲକ୍ଷ୍ମୀନାରାୟଣ ମହାନ୍ତି

ସନ ୧୯୪୧

ଜଗନ୍ନାଥ ସାହିତ୍ୟ ସମିତି
ଭଦ୍ରକ ।

# ନିର୍ଦ୍ଦେଶ

"ଆପଣା ପଥେ ଗ୍ଲେ ଆପଣା ଶକତରେ,
ମୋ ପାଶେ ନାହିଁ କେହି ନାହିଁ କେ ମୋ କଣ୍ଠରେ ।

+ + + +

ଜୀବନର ପୂଜା ଯେବେ ବ୍ୟର୍ଥ ହେବ ସେହି ମୋର ଧ୍ୟେୟ
ଜନମ ଜନମ ଲାଗି ସ୍ୱୀକୃତି କରିବ ପାଥେୟ ।"

— ମହାପାତ୍ର ନିତ୍ୟାନନ୍ଦ

# ଅର୍ଘ୍ୟ



"ପିତା ଧର୍ମ ପିତା ସ୍ୱର୍ଗ ପିତାହି ପରମଂ ତପଃ
ପ୍ରିତଟି ପ୍ରିତିମାପନ୍ନେ ପ୍ରିୟନ୍ତେ ସର୍ବ ଦେବତା ।"

ଗହ୍ୱର୍ ୯ ନୈବେଦ୍ୟ ଅର୍ଘ୍ୟ ଦେଲି ।

ସ୍ନେହାଧୀନ

**— ଲକ୍ଷ୍ମୀନାରାୟଣ —**

# ଭୂମିକା

ଘର ଭାଙ୍ଗିପଡେ । ପୁଣି ଘର ତୋଳା ହୁଏ । ଦଳ ଦଳ ମଣିଷ ଅଣାଭାଡ଼ ପୁଣି ଲାଗି ପଡନ୍ତି, ନୂଆ ଘର ତିଆରିବାକୁ । ସେଥିର 'ପାଚି' ଝଡ଼ଝଞ୍ଜା । ଗାଛ ଖାଲ କାନ୍ଥରୁ କେତେ ଖାଁ ଖାଁ ଗୋଡ଼ାଏ । ପୁଣି ବୃଷ୍ଟି ଲାଗେ, ଭୂଇଁ ତାତେ, ପୁଣି ସାମ୍ବୁଜା ଦେଖି ପବନ ତଳେ ଡେଉ ମୁଣ୍ଡେଇ ଠିଆ ହୁଏ । ଉଦୟନ୍ ସୂର୍ଯ୍ୟର ଆଶୀର୍ବାଦ ଘେନି ମଣିଷ-ଶିଶୁ ଜନ୍ମ ହୁଏ, ତାର ଆଖି ସବୁଦିନେ ସେହି ସାବୁଜା ଦେଖି ଆଗକୁ । ଅସ୍ତାନ୍ ସୂର୍ଯ୍ୟ ଆଉ ଝଡ଼ିଲ ଦେଶ ଝାଲି ନଦରେ ଛାଇ ପକା ଗୁଳିଯ ଏ, ଆଖି ଆକାଶ ଦେହ ପାରେ ନାହିଁ । ମଳି ବାଟର ବୁଢା ବୁଢୀ କୁହୁଡ଼ ସାବୁଜା । ସେଥିକୁ କେବଳ ଅନ୍ଧାର ସାବୁଜା କରେ ।

ସେହିପରି ଆଜି **"ଜଗନ୍ନାଥ ସାହିତ୍ୟ ସମିତି"** । ଓଡ଼ିଶାର କେତେ ସାହିତ୍ୟ ସମିତି ନାଁ ଶୁଣାଯାଉଛି—ହେଉ ପଛେ ଦିଦିନିଆ ଫୁଲ,—ତାର ବି ସୁବାସ ଅଛି । ତେଣୁ ବୋଲାଧ ପରିଚାଳକମାନେ ଅନ୍ତିଥିଲି ବୋଲି ଚିଣି ଛଟିଛଇ ଦେଇ ନାଁ ରଖିଲେ, "ଜଗନ୍ନାଥ", ଏଇ ମୃଏତ ପଡ଼ିବା ଝଡ଼ିବା ମଧ୍ୟେ ନୂଆ ଉତରେ ଅସଲ ଓଡ଼ିଆ ସାହିତ୍ୟର ଆତ୍ମ-ପ୍ରକାଶ । ନୂଆ ଘରତୋଳା ହେଉଛି । ଆସ ଲାଗିବା । ପୁରାତନ ପାଇଁ କ୍ଷୋଭ ନାହିଁ । ଜୟ ନୂତନ ।

କଠୋର ଛନ୍ଦରେ ଶବ୍ଦ-ବ୍ରହ୍ମଙ୍କର ଅଦମ ପ୍ରକାଶ । ତେଣୁ **"ସଂଘର୍ଷ"** । ତାହାପରେ ଛନ୍ଦର କଠିନ ବନ୍ଧନ,—ଗଦ୍ୟ ଉପନ୍ୟାସ । ତେଣୁ ଏ ଗଳ୍ପର ସମଷ୍ଟି । ଚଳନ୍ତି ଛନ୍ଦର ପ୍ରଥମ ବଳୟ,—ଏହା ଶେଷ ।

କୁମାର ଲକ୍ଷ୍ମୀନାରାୟଣଙ୍କର **"ନୈବେଦ୍ୟ"** ବାହାରିଲା । ଗୁଲିଗଲା ବଠୋଇ ଉପରେ କେତେ ଅଲୁଅ କେତେ ପବନ ବାଜେ, କେତେ ଧୂଳି ଝଡ଼େ । ତଥିରୁ କିଛି ସେ ବାଛି ରଖିଛନ୍ତି । ତାହାହିଁ ସାହିତ୍ୟ,—ସରଳ, ସହଜ, ନିଛ ଦିନର ଶବ୍ଦ ଆଉ ଅନୁଭୂତି, ଯାହାର ସମଷ୍ଟି ସର୍ବ ମଣିଷଙ୍କର ଦିନରେ ହୁଏ ନିଶ୍ୱାସ, ରାତିରେ ହୁଏ ସ୍ୱପ୍ନ ।। ନିତିଦିନିଆ, ତେଣୁ ସୁନ୍ଦର,—ଫାଙ୍କା ଆକାଶର ଦେବତାଙ୍କ ଅଭିପ୍ରେତ ନ ହୋଇ ପାରେ, ମାଟିର ମଣିଷ ଆଖିରେ ସୁନ୍ଦର ।

କ୍ୟାମ୍ପ ଜୟପୁର
୧୯୪୧ ଫେବୃୟାରୀ

**ଶ୍ରୀ ଗୋପୀନାଥ ମହାନ୍ତି**
( ଏମ୍. ଏ. )

ଆଶାକରୁଁ ଉତ୍କଳର ପ୍ରତ୍ୟେକ ସହର ଓ ପୁରପଲ୍ଲୀବାସୀ ଏହି ସମିତିକୁ ନିଜ-ନିଜର ଭଳି ଗ୍ରହଣ କରି ଉତ୍କଳ ସାହିତ୍ୟର ଉନ୍ନତି କରିବେ । ସାହିତ୍ୟ ସଭ୍ୟତାର ମାପକାଠି । ପୁଣି ଏହି ସାହିତ୍ୟ ସମିତି ଶିଶୁ ହେଲେହେଁ ଏକ ନବୀନ ଓ ଅଗ୍ରଗାମୀ ଅନୁଷ୍ଠାନ । ଏହା ନୂତନତାର ଏକ ଅପୂର୍ବ ଓ ସ୍ୱତନ୍ତ୍ର ଦୃଷ୍ଟିକୋଣର ପକ୍ଷପାତୀ । ଆମ୍ଭେମାନେ ପ୍ରଗତିମୂଳକ ଓ ସଂସ୍କାରମୁକ୍ତ ସାହିତ୍ୟ ଉପରେ ବିଶେଷ ଧ୍ୟାନ ଦେଉଁ । ଆମ୍ଭେମାନେ ଆଧୁନିକ ସାହିତ୍ୟର ଗତି ନିରୀକ୍ଷଣ କରିବାକୁ ଯାଉଛୁଁ । ବିଶ୍ୱାସ ହୁଏ ତାହା ବେପରୁ ଏହି ଯୁଗର ପ୍ରତୀକ ହେବାକୁ ସଯତ୍ନ ଓ ଚଞ୍ଚଳ ହୋଇ ଉଠିଛି । "ଆଶା, ନିରାଶା, ଅନ୍ୱେଷଣ, ଶଙ୍କା, ଅଶ୍ରଦ୍ଧା, ଅତୃପ୍ତି, ସଂଘର୍ଷ, ବିପ୍ଳବ ଓ ବେଦନାର ସ୍ୱର ଯାହାକି ଅନ୍ତ ସ୍ୱରତର ହଜାର ହଜାର ନର ନାରୀଙ୍କର ହୃଦୟକୁ ଉଦ୍ବେଳିତ କରୁଛି—"ସେ ସବୁକୁ ଆମ୍ଭେମାନେ ଦେଶର ପ୍ରତ୍ୟେକ କୋଣ କନ୍ଦରୁ ସାହିତ୍ୟକୁ ଭିତର ରୂପେ ପଠାଇ ସାଦରରେ ଆମନ୍ତ୍ରିତ କରିନେବାକୁ ଚାହୁଁ । ସମିତିର ପ୍ରଥମ ଅବଦାନ 'ସ୍ୱଢର୍ଚ୍ଚି' ଏହି ଧରଣର ଲେଖାରୁ ଗୋଟିଏ ।

ଆମ୍ଭେମାନେ ଏ ମଧ୍ୟରେ ଉତ୍କଳର ବହୁ ଖ୍ୟାତ ବ୍ୟକ୍ତି, ସାହିତ୍ୟିକ ଓ ନେତୃସ୍ଥାନୀୟଙ୍କ ଠାରୁ ଆଶୀର୍ବଚନ ଶୁଣିପାରିଛୁଁ । ତାହା ଆମ୍ଭମାନଙ୍କୁ କର୍ମକ୍ଷେତ୍ରରେ ନବୀନ ପ୍ରେରଣା ଓ ଏକ ଆଶା ଅନ୍ତର୍ଗତ ସାହାସରେ ଉଦ୍ଦୀପିତ କରୁଅଛି । ସେମାନଙ୍କ ମଧ୍ୟରେ କାନ୍ତକବି ଲକ୍ଷ୍ମୀକାନ୍ତ, କବିଶେଖର ଚିନ୍ତାମଣି, ସୁସାହିତ୍ୟିକ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି (M.A.), ଅସ୍ୱର୍ଯ୍ୟ ମାୟାଧର ମାନସିଂ, ଦେଶପ୍ରେମୀ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ (ଭାରତ ସେବକ ସମିତିର ସଦସ୍ୟ) ଓ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର (ଜଗତ ସଂପାଦକ) ପ୍ରଭୃତି ପ୍ରଧାନ । ଉତ୍କଳର ବରେଣ୍ୟ ଶିଳ୍ପୀ ଶ୍ରୀଯୁକ୍ତ ଗୋପାଳ କାନୁନଗୋ (B. A.) ଆମ୍ଭମାନଙ୍କର ପ୍ରକାଶନଗୁଡ଼ିକର ପ୍ରଚ୍ଛଦପଟ୍ଟ ଅଙ୍କି ଦେଇଥିବାରୁ ସମିତି ତାଙ୍କପାଖରେ ଋଣୀ ।

ବର୍ତ୍ତମାନ ଦ୍ୱିତୀୟ ଅବଦାନ 'ନୈବେଦ୍ୟ' ପ୍ରକାଶ ପାଇଲା । ଏହା ପରେ ଶ୍ରୀଯୁକ୍ତ ରାଜକିଶୋର ପଟ୍ଟନାୟକଙ୍କର କାନ୍ତ ସ୍ନିଗ୍ଧ ଲେଖନୀ ପ୍ରସୂତ ସ୍ମରୁକଳାର ଅମର ଉଦ୍ଭବ 'ଭଯାମେଘ' ହିଁ ପ୍ରକାଶ ପାଇବ । ଏହାର ସାଥେ ସାଥେ ଆମ୍ଭେମାନେ 'ମାୟାମୃଗୀ' ନାମରେ ତଦନ୍ତ କାହାଣୀ ଗ୍ରନ୍ଥଟିଏ ମଧ୍ୟ ପ୍ରକାଶ କରିବୁଁ । ପୁସ୍ତକର ଛତ୍ରେ ଛତ୍ରେ ଦେଖିବା ଲୋମହର୍ଷଣକାରୀ ଘଟଣା ପରିପୂର୍ଣ୍ଣ । ଉତ୍କଳ ସାହିତ୍ୟ ଭଣ୍ଡାରରେ ଡିଟେକ୍‌ଟିଭ ଧରଣ ଲେଖାର ସ୍ଥାନ ବିଲକୁଲ ଶୂନ୍ୟ ପଡ଼ିଛି । ଆମ ସମିତି ସେହି ସ୍ଥାନ ପୂରଣ କରିବା ଲାଗି ଯଥୋଚିତ ଚେଷ୍ଟିତ ହେବ । କେବଳ ଏହି କାରଣରୁ ଆମେ ଉତ୍କଳର ଉପନ୍ୟାସ ପ୍ରିୟ ପାଠକ ଓ ଗାଳ୍ପିକ ତଥା ଔପନ୍ୟାସିକ ଲେଖକମାନଙ୍କର ଏକ ସ୍ୱତନ୍ତ୍ର ସହାନୁଭୂତି ଆଶାକରୁଁ । ଇତି ।

ଶ୍ରୀ ଚକ୍ରଧର ମହାନ୍ତି
ସଂପାଦକ, ଜଗନ୍ନାଥ ସାହିତ୍ୟ ସମିତି ।

# ଜୀବନଧାରା [illegible]

## —ଏକ—

ଏକ୍ ଥିଲେ ରଜା । ତାର ଥିଲା ଏକ୍ ରାଣୀ । ଦୁହିଁଙ୍କର ଥିଲା ଭାରି ମେଳ, ଏକ୍ କଥା, ଏକ୍ ଆତ୍ମା—ଦୁହେଁ ଯେମିତି ଏକ୍ ।

ରାଣୀ କହେ—"ଏକ୍ ଥିଲା ରଜା । ତାର ଥିଲା ଏକ୍ ରାଣୀ···"

ରଜା ହଠାତ୍ ତା ପାଟିରେ ହାତ ଦେଇ ତା କଥାକୁ ବନ୍ଦ କରି କହେ—"ଉହୁଁ ! ଏକ୍ ଥିଲା ରାଣୀ । ତାର ଥିଲା ଏକ୍ ରଜା···"

ଏତିକିରେ କାହାଣୀ ସରେ । ଦୁହେଁ ସେ କଥା ଭୁଲି ଯାଆନ୍ତି ।

ଏମିତି ପ୍ରେମ ସାଗରରେ ନୌକାଟି ତାଙ୍କର ଚାଲିଥାଏ । ଆନନ୍ଦରେ ବିଭୋର ହୋଇ, ଦିନଗୁଡ଼ିକ ତାଙ୍କର ସୁଖରେ ବିତି ଯାଉଥାଏ ।

'ଦିନ ବିତିଯାଏ । ମାସ ବିତିଯାଏ । ବରଷ ବି ବିତିଯାଏ ଏଇପରି । କିନ୍ତୁ କାହାଣୀଟି କେବେ ପୂରନ ହୁଏନାହିଁ । ଦିନେ ରାଜା ଯେମିତି ନିଦରୁ ଉଠିଲେ ତ, ଭାବିଲେ—"ଏଁ, କାହାଣୀଟି ଅଧା ହୋଇ ରହିଲା ।" ରାଣୀଙ୍କ ପାଖକୁ ଗଲେ । ଦେଖିଲେ—ରାଣୀଙ୍କ ମୁହଁ ବିଷାଦର କଳା ମେଘରେ ଢାଙ୍କି ହୋଇ ପଡ଼ିଛି ।

ତାଂକୁ ଉଠାଇ ରଜା କହିଲେ—"କି ଦୁଃଖ ତମର ରାଣୀ ? ମତେ କଣ କହିବ ନାହିଁ ?"

ରାଣୀ ତାଂକ ବକ୍ଷ ସ୍ଥଳରେ ଲୁଚିଗଲା ମୁହଁଟି ଲୁଚ୍ଚାଇ ରଖିଲେ । କିଛି ଜବାବ ଦେଇ ପାରିଲେ ନାହିଁ ।

ରଜା ବଡ଼ ଭାବନାରେ ପଡ଼ିଲେ । କହିବାକୁ ଲାଗିଲେ— "ଆଜି ତମର ଅଧା କାହାଣୀଟି ପୂରା କର ରାଣି ! ମୁଁ ଶୁଣିବି— ମନ ଦେଇ ସବୁ ଶୁଣିବି ।" ରାଣୀଂକ ଆଖିରୁ ଜାଡ଼ ଦିନର କାକର ପରି ବଡ଼ ବଡ଼ ଦୁ' ଠୋପା ଲୁହ ଗଡ଼ି ପଡ଼ିଲା । କହିଲେ— "କାହାଣୀ ତ ଅଧା ହୋଇଛି ରାଜା ! ପୂରା କିମିତି ହବ ?"

\+ \+ \+ \+

## —ଦୁଇ—

ବଡ଼ ବାଡ଼ ପଂଡିତ, ବଡ଼ ବଡ଼ ଗୁଣୀ ବିଦ୍ୱାନ୍ ଆସିଲେ । ସମସ୍ତେ ମିଳି ବିଚାର କଲେ, କାହାଣୀ ଅଧା ହୋଇ ରହିଛି । "ଏକ୍ ଥିଲା ରଜା, ଏକ୍ ଥିଲା ରାଣୀ······।" ତାପରେ ତ ଅଧଂକାର ଥିଲା—ଅମାବାସ୍ୟାର ମହା ଅଂଧକାର; ଆଖିକୁ କିଛି ଦେଖାଯାଉ ନ ଥିଲା ।

ରଜାଂକ ହୃଦୟଟି ଶିଥିଳ ହୋଇ ଯାଇଛି—ଉତ୍ସାହ କ୍ଷୀଣ ହୋଇ ଯାଇଛି । ରଜା ଆଉ ରାଣୀ ଜଣେ ଅନ୍ୟ ଜଣକୁ ଦେଖିଲେ ମୂକ ପାଲଟି ଯାଉଚଂତି । କେହି କାହାକୁ କିଛି କହି ପାରୁ ନାହାଂତି । ଏଇମିତି ଭାବରେ ଦିନଗୁଡ଼ା କଟି ଯାଉଛି ।

ରାଜ କାର୍ଯ୍ୟରେ ବି ବାଧା ପଡ଼ିବାକୁ ଲାଗିଲା । ରଜା କହଂତି—"ମଂତ୍ରୀ ! ତମର ଯା' ଇଚ୍ଛା, ତା' କର ।"

ମଂତ୍ରୀ କହୁଂଛି—"ଜୟମଂତ୍ର ! ତୁମେ ଯଉଁଟା ଉଚିତ ମନେ କରୁଚ, କର ।" ଶତ୍ରୁଙ୍କୁ ବଳ ମିଳିଲା । ରାଜ୍ୟ ଆକ୍ରମଣ କଲେ । ରଜାଂକର ଶକ୍ତି ନ ଥାଏ—ସାହାସ ନ ଥାଏ—ଏତକ୍କ ଟିକଏ ହେଲେ ଉତ୍ସାହ ନ ଥାଏ । ବିଜୟର ଲାଳସା ବି ନଥାଏ ।

ତା'ପରେ ରଜା ଆଉ ରାଣୀ ଦାଂଡର ଭିକାରୀ ହେଲେ । ଦହେଁ ଦହୁଂକ ହାତ ଧରା ଧରି ହେଇ ଅସୀମପଥ ଉଦ୍ଦେଶ୍ୟରେ ଚାଲିଲେ ।

ଚାଲି ଚାଲି ଢେର୍ ଦୂରକୁ ଚାଲିଗଲେ—ଶେଷରେ ବାଟ ଭୁଲି ଆସି ଏକ ନିଘଂଚ ଜଂଗଲରେ ପହୁଂଚିଲେ ।

ଦହେଁ ମିଳି ମିଶି ବଣରୁ ଡାଳ ପତ୍ର ଆଣି ଗୋଟେ ଛୋଟ କୁଡ଼ିଆ ବନେଇ, ସେଥିରେ ବାସ କରିବାକୁ ଲାଗିଲେ । ତାଂକ ଆଖ ପାଖରେ କୌଣସି ଗାଁ ଗଂଡା କି ଘର ଦ୍ୱାର ନ ଥାଏ । ହାତୀ ଘୋଡ଼ା ନ ଥାଏ, ଅସ୍ତ୍ର ଶସ୍ତ୍ର ନ ଥାଏ, ସୈନ୍ୟ ସାମଂତ କିଂବା ପାଇକ ନ ଥାଂତି । ଚାକର ବାକର ନ ଥାଂତି କି ଖାଇବାକୁ ପେଟକୁ ମୁଠାଏ ଦାନା ନ ଥାଏ । ରଜା ବହୁତ ଦୂରକୁ ଯାଇ ଗାଁ ଗାଁ ବୁଲି ଚାଉଳ ମାଗି, ଧୂମୁଧୂମିଆ ଦ'ପହରକୁ ଫେରଂତି— ଖରାରେ ମୁହଁଟି ଶୁଖି କଳାକାଠ ପଡ଼ି ଯାଇଥାଏ । ରାଣୀ ସାତେ ସାତ ଭାତ ଦ'ଟା ଫୁଟେଇ ଦଅଂତି । ଦ'ପରାଣୀ ସେତକ ଖାଅଂତି । କେବେ କେବେ ରଜା ଜଂଗଲରୁ କାଠ ଭାଂଗି ଆଣଂତି । ରାଣୀ ତାକୁ ଗୋଛା କରି ବାଂଧି ରଜାଂକ ମୁଂଡ ଉପରକୁ ଟେକି ଦଅଂତି । ରଜା ତାକୁ ବଜାରରେ ବିକି ଫକ ବେଳକୁ ଚାଉଳ ପରବା ନେଇ, ଫେରି ଆସଂତି ।

ଦହେଁ ଯେବେ ଖୋଲା ପବନରେ ଘଡ଼ିଏ ଆରାମରେ ବସଂତି ତ

ରାଣୀ କହି ପକାଂଉ—"ଏକ୍ ଥିଲା ଭିକାରୁଣୀ । ତାର ଥିଲା ଏକ୍ ରଜା......"

ରଜା ବାଧା ଦେଇ କହଂଉ—"ଉଁହୁଁ । ଏକ୍ ଥିଲା ଭିକାରୀ । ତାର ଥିଲା ଏକ୍ ରାଣୀ......।"

କାହାଣୀ ଏଇଠି ବନ୍ଦ ହୁଏ । ଦହେଁ ପ୍ରେମ କଳହରେ ଥକା ହୋଇ, ଜଣେ ଅରକର ବାହୁ ଉପରେ ମଥା ରଖି ଶୋଇଯାଏ ।

କେବେ କେବେ ଭିକ ମୁଠେ ବି ମିଳେ ନାହିଁ । ରଜା ସେଠୁ ନିରାଶ ହୋଇ ଫେରଂଉ । କୁଡ଼ିଅଟିରୁ ଧନୁ ବାଣ ବାହାର କରି ହାତରେ ଧରି ବୁଲଂଉ ଶିକାରକୁ । ସାମନାରେ କ୍ରୀଡ଼ାରତ ହରିଣୀ ଉପରକୁ ଶର ନିକ୍ଷେପ କଲାବେଳେ, ରାଣୀ ହାତ ଧରି ପକାଂଉ—ଲକ୍ଷ୍ୟ ବିଦ୍ଧ ହୁଏ ନାହିଁ ।

ରଜା କହଂଉ—"ହାତ ଧର ନାହିଁ, ରାଣି !"

ରାଣୀ କହଂଉ—"ବେଶି ଲୋଭ ଭଲ ନୁହେଁ । ରାମାୟଣ କଥା କଣ ପଢ଼ିନାହିଁ ?"

ରଜା ହସି, ଧନୁବାଣ ଭୂଇଁରେ ରଖି ଦଅଂଉ । ଦହେଁ ଉପାସ ଭୋକରେ ଶୋଇ ରହଂଉ । ରାତରେ ଭୋକ ଜାଲାରେ ଯେବେ ନିଦ ନ ହୁଏ ତ ରଜା କହଂଉ—"ତୁମେ କାହିଁକି ଅଜ ମତେ ଶିକାର କରିବାକୁ ଦେଲ ନାହିଁ, ରାଣି ?"

ରାଣୀ କହଂଉ—"ଦେଖ, ତୁମକୁ ମୁଁ ଅଜ ଗୋଟେ କାହାଣୀ କହିବି ।"

ରଜା ଚୁପ୍ ହୋଇ କାନ ପାରି ଶୁଣଂଉ, ରାଣୀ; କହିବାକୁ ଲାଗଂଉ—"ଏକ୍ ଥିଲା ହରିଣ । ତାର ଥିଲା ଏକ୍ ହରିଣୀ । ତାଂକର

ଥିଲା ଏକ ଛୁଆ । ବଡ଼ ଅନନ୍ଦରେ ଯାଉଥାଏ କଟି, ତାଂକ ଦିନ । ଦିନକରେ ଆଇଲା ଏକ ଶିକାରୀ । ତାଂକୁ ଦେଖି ବଳିଲା ତାର ଲୋଭ । ଏମିତ ହରିଣ ଦେଖି ନ ଥିଲା ସେ କେବେ ତା ଜୀବନରେ । ହରିଣକୁ ମାରି ନେଇଗଲା ତା ନିଜ ଦେଶକୁ । ଏଣେ ହରିଣୀ ପାଇଲା ନାହିଁ ଦେଖା ହରିଣର । ହେଲା ବହୁତ ବ୍ୟାକୁଳ । ଘୁରି ବୁଲିଲା ଦିନ ରାତ, ବଣ, ଜଂଗଲ, ପାହାଡ଼, ପର୍ବତ, ଗାଁ, ଗଂଡା, ଖାଲ, ବିଲ, ନଈ ଚାରିଆଡେ କାଂଦି କାଂଦି । କିଂନ୍ତୁ ପାଇଲା ନାହିଁ ତା ପ୍ରାଣର ନିଧି ହରିଣକୁ । ତାପରେ ଭୋକ ଶୋଷ ଆଉ ଶୋକରେ ଉଡ଼ିଗଲା ତା ପ୍ରାଣ ।

ତାଂକ ଛୁଆଟି ମା ବାପଂକୁ ନ ପାଇ ଚାରିଆଡ଼େ ବୁଲିଲା—ଖୋଜିଲା । ଦୁଧ ଟୋପେ ତାକୁ କେହି ପିଆନ୍ତି ନାହିଁ କି ଘାସ ଘାସ ତାକୁ କେହି ଶୁଖାଇ ପକାନ୍ତି ନାହିଁ । ସେ ଖାଲି ରଡ଼ି ଛାଡ଼େ—"ବା—ବା—।"

ତାର ଏହି କରୁଣ ବିକଳ ବିଳାପ ଧ୍ୱନି ଓ ଡାକରେ ସାରା ଜଙ୍ଗଲର ସବୁ ଜୀବଜନ୍ତୁଙ୍କ ଆଖିରେ ଲୁହ ଭରିଯାଏ । କିନ୍ତୁ କେହି ତାକୁ ପାରିଲେ ନାହିଁ ରକ୍ଷା କରି । ଶେଷରେ ଦିନେ ସେ ଭୋକ ଶୋଷରେ ଛଟପଟ ଓ ବାଉଳି ବାଉଳି ହୋଇ ମରିଗଲା ।

ସେତେବେଳେ ରଜା ଆଉ ରାଣୀ ଦିହିଙ୍କ ଆଖିରୁ ଲୁହ ଗଡ଼ିପଡ଼େ । ରଜା କହି ଉଠନ୍ତି—"ଆଉ କେବେହେଁ ତା ଉପରକୁ ହାତ ଉଠେଇବି ନାହିଁ, ରାଣି ! ତମେ ଆଉ କେଉଁଦିନ ଏମିତି କରୁଣ କାହାଣୀ ମୋ ଆଗରେ କହିବ ନାହିଁ ।"

ରାଣୀ କହନ୍ତି—"ଆଉ କହିବି ନାହିଁ, ରଜା ।"

ଏହାପରେ ରାଣୀ ତାଙ୍କ ହୃଦୟ ଉପରେ ନିଜ ସୁକୋମଳ ମୁଖଟି ରଖି ଶୋଇ ପଡ଼ନ୍ତି ।

ଏଇମିତ ଦିନ କଟିଯାଏ । ମାସ କଟିଯାଏ । ଅଉ ବର୍ଷ ବି ।

\+ \+ \+ \+

## —ତିନି—

ଅନନ୍ତର ଦିନକରେ ଅନ୍ଧାର ରାତର କଳା ପର୍ଦା ଭିତରୁ ବାଳ ରବି ମୁହଁ ଦେଖାଇଲେ । ଜଙ୍ଗଲରେ ଆନନ୍ଦର ବର୍ଷା ଉଠିଲା । ରଜା ଖୁସିରେ ପାଗଳ ହୋଇଗଲେ ।

ରାଣୀଙ୍କର ପୁଅଟିଏ ହୋଇଛି । ଆଖ ପାଖରେ ଥିବା ଅରଣ୍ୟ-ବାସୀମାନେ ଏହି ମଉଜରେ ଆସି ଯୋଗ ଦେଲେ—ଆନନ୍ଦରେ ବିଭୋର ହୋଇ ଗୀତ ଗାଇ ନାଚିଲେ । କାନନ ମୁଖରିତ ହୋଇ ଉଠିଲା ।

ଶୁକ୍ଳ ପ୍ରତିପଦର ଚନ୍ଦ୍ର ପରି ଶିଶୁଟି ବଢ଼ିବାକୁ ଲାଗିଲା । ରାଣୀଙ୍କ ମୁଖରୁ ବିଷାଦକାଳିମାର ଦାଗ ଲିଭି ଯାଇଛି । ରଜାଙ୍କ ହୃଦ-ମନରେ ଯୁବ ସୁଲଭ ଉତ୍ସାହର ଲତା ଅଙ୍କୁରିତ ହୋଇ ଉଠିଛି ।

ଦିନକରେ ରାଣୀ ପିଲାଟିକି ନେଇ ଗୋଟେ ଗଛତଳେ ନଡ଼ୀର ସ୍ଥଳରେ ଶୁଆଇ ଦେଇ ବସି ରହିଲେ । ରଜା ବି କଉଁଠୁ ବୁଲି ବୁଲି ହାଲିଆ ହୋଇ ଆସି, ସେଇଠି ବସି ପଡ଼ିଲେ ।

ରାଣୀ କହିଲେ—"ଶୁଣିବ କାହାଣୀ ରଜା ? ଏକ୍ ଥିଲା ଭିକାରୁଣୀ । ତାର ଥିଲା ଏକ୍ ରଜା······"

ରଜା ବାଧା ଦେଇ କହିଲେ—"ଉଁହୁଁ । ଏକ୍ ଥିଲା ଭିକାରି, ତା'ର ଥିଲା ଏକ୍ ରାଣୀ······"

ରାଣୀ ତାଙ୍କ ମୁହଁରେ ହାତ ଦେଇ କହିଲେ—"ନାଁ, ଏକ୍ ଥିଲା ଭିକାରୁଣୀ।"

ରଜା କହିଲେ—"ନାଁ, ନାଁ। ଏକ୍ ଥିଲା ଭିକାରି।"

ଦୁହେଁ ଏକା ସାଙ୍ଗରେ କହି ପକାଇଲେ—"ତାଙ୍କର ଥିଲା ଏକ୍ କୁମାର।"

ରଜା ଖୁସିରେ ଉଛୁଳି ପଡ଼ିଲେ।

"କାହାଣୀଟି ପୂରା ହୋଇଗଲା ରାଣି! କାହାଣୀ ତ ପୂରା ହୋଇଗଲା।"

ତା'ପରେ ଉଆଁଟିଏ ମାରି ରାଣୀଙ୍କ ସୁଗୋଲ ମୁହଁରେ ସବୁଠୁ କଅଁଳିଆ ଚୁମ୍ବନଟାଏ ଆଙ୍କି ଦେଲେ—ଏବଂ ଶିଶୁଟିର ପାଖକୁ ଯାଇ ଗେହ୍ଲାରେ ଡାକିଲେ "**କୁମାର**।" ରାଣୀଙ୍କ ମୁହଁ ଲଜ୍ଜା ଓ ହରଷରେ ଲାଲ୍ ପଡ଼ିଗଲା। ସେ ବି ଶିଶୁଟି ଉପରେ ନଇଁ ପଡ଼ି ତା ମୁଣ୍ଡରେ ଚୁମାଟିଏ ଦେଇ କହି ଉଠିଲେ—"**କୁମାର**।"

ରଜା ଆବେଗରେ ବହି ଯାଉଛନ୍ତି। ଧୀରେ ଧୀରେ ଉଠି ରାଣୀଙ୍କ ପାଖକୁ ଗଲେ। ବସି କହିଲେ—"ରାଣି! ଏଥର ଆମକୁ ତ ଅରଣ୍ୟବାସୀଙ୍କ ଶରଣ ନେବାକୁ ପଡ଼ିବ?"

ରାଣୀ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନାଇ କହିଲେ—"କାହିଁକି, କଣ ହେଇଚି କି ରଜା?"

"ହବ କଣ?"—ରଜା କହିଲେ। "କୁମାର ତ ଘର କୁମାର ହେଇ ରହିବ ନାହିଁ, ରାଣି!" ଏତକ କହି ଦେଇ ସେଠୁ ଉଠି ଚାଲିଗଲେ। ଫେର୍ କିଛି ସମୟ ପରେ ଫେରି ଆସି ନିଜର ପୁରୁଣା

ତରବାରୀ ବାହାର କରି ତାକୁ ଓଲଟ ପାଲଟ କରି ଦେଖିବାକୁ ଲାଗିଲେ ।

ରାଣୀ ଅବାକ୍ ହୋଇ ଶିଶୁଟିର ସଦ୍ୟ ପ୍ରସ୍ଫୁଟିତ ପଦ୍ମ ଫୁଲ ପରି ମୁହଁଟିକୁ ସନ୍ତୃପ୍ତ ନୟନରେ ନିରୀକ୍ଷଣ କରି ଅନାଇ ରହିଥାଆନ୍ତି । ଆଜ ମନେ ମନେ ଭାବୁଥାନ୍ତି—ରଜା ତ ଆଜି ବୁଢ଼ା ହୋଇ ପାରିଲେଣି ଇଚ୍ଛାଶକ୍ତି । ଦୀର୍ଘ କୋଡ଼ିଏ ବରଷ ପରେ ସେ ପୁଣି ଆଜି ସେହି ରଜା—ମୋର ସେହି ରଜା ।

ରାଣୀ କୋମଳ ଓ ନରମ ସୁରରେ ଡାକିଲେ—"ରାଜା !"

ରଜା ଧୀରେ ନମ୍ର ସୁରରେ ହସି ତାର ଜବାବ ଦେଲେ—"ରାଣି !"

ରାଣୀ ରଜାଙ୍କ କାନ୍ଧ ଉପରେ ଢଳି ପଡ଼ିଲେ ।

(ଶରତ—୧ମ ବର୍ଷ, ଚତୁର୍ଥ ସଂଖ୍ୟାରେ ପ୍ରକାଶିତ)

# ଅମର ବୀଣା

କୃଷ୍ଣବାବୁ ସଂଗୀତର ଜଣେ ବଡ଼ ପୁରୋଧା ଥିଲେ । ତାଙ୍କ ସମୟରେ ସାରା ଓଡ଼ିଶା ମୂଲକରେ ତାଙ୍କ ପରି ଜଣେ ଗାଇବା ବଜେଇବା ବାଲା କେହି ନ ଥିଲେ । ବଡ଼ ବଡ଼ ସଂଗୀତଜ୍ଞମାନେ କୃଷ୍ଣବାବୁଙ୍କ ସହିତ ପ୍ରତିଯୋଗିତା କରିବାକୁ ଆସନ୍ତି— କିନ୍ତୁ ସମସ୍ତଙ୍କୁ ତାଙ୍କ ପାଖରେ ହାର ମାନିବାକୁ ପଡ଼େ । ସମସ୍ତେ କୃଷ୍ଣବାବୁଙ୍କ ବୀଣା ବାଦ୍ୟରେ ମୁଗ୍ଧ ହୋଇ ଯାଉଥିଲେ । ଯେତେବେଳେ କେବେ ଶୁଦ୍ଧମୀ ରାତିରେ ଅତି ଆନନ୍ଦରେ ଘାଟ ଉପରେ ବସି ସେ ବୀଣା ବଜାନ୍ତି, ସେହି ସମୟରେ ଆଖ ପାଖରେ ଥିବା ଲୋକେ ନିଜ ନିଜ କାମଧନ୍ଦା ଛାଡ଼ି ସେଇ ସଂଗୀତ—ଲହରୀର ଅପରୂପ ଝଙ୍କାରରେ ତନ୍ମୟ ହୋଇଯାଆନ୍ତି । ସେହି ବୀଣାରୁ ଏପରି ଏକ କରୁଣ ବେଦନାଯୁକ୍ତ ରାଗିଣୀ ନିର୍ଗତ ହୁଏ, କି ପଥରର ହୃଦୟ ବି ତରଳି ଯାଏ । ଏମିତି ମୂର୍ଚ୍ଛିତ ରାଗିଣୀ ନିର୍ଗତ କରିବାରେ ସେ ସିଦ୍ଧହସ୍ତ ।

ଥରେ ଏହି ସଂଗୀତାଚାର୍ଯ୍ୟ ବସି ଭାବିଲେ—ଯଦି ମୁଁ ଏହି ପୃଥିବୀରୁ ଚାଲିଯିବି, ସେହି ସମୟରେ ମୋ କଳା ବି ମୋ ସାଙ୍ଗରେ ଚାଲିଯିବ । କେହି ଏପରି ଲୋକ ରହିବ ନାହିଁ ଯେ କି ମୋ କଳାକୁ ମୋ ପରେ ବି ଜୀବିତ ରଖିପାରେ । ଧୀରେ ଧୀରେ ମୋ ନାମ ବି ସଂସାରରୁ ଲିଭିଯିବ । ସବୁ ଭୁଲିଯିବେ ଯେ କୃଷ୍ଣବାବୁଙ୍କ

ବୀଣା ସମସ୍ତଙ୍କୁ ମୁଗ୍ଧ କରି ପାରୁଥିଲା । ଏହି ଭାବନା ହୃଦୟରେ ତାଙ୍କର ଜାଗ୍ରତ ହେଲା ମାତ୍ରେ, କୃତ୍ତିବାବୁ ଅତି ଦୁଃଖ ପ୍ରକାଶ କଲେ । ସେହି ଦିନଠାରୁ ତାଙ୍କ ପ୍ରିୟର ବୀଣାଟିକୁ ଦେଖିଲେ ତାଙ୍କ ମନରେ ଅପାର ଦୁଃଖ-ରାଶିର ଉଦ୍ରେକ ହୁଏ—ଭାବିଲେ କି ତାଙ୍କ ସ୍ନେହର ବୀଣାକୁ ଖୁବ୍ ଶୀଘ୍ର ଭୁଲିଯିବେ ।—ଯେହେତୁ ଯଉଁ କଳାର ସୃଜନ ଏମିତ କେହି କରି ନ ଥିଲେ, ସେ ମରିଯିବ । ତାଙ୍କ କଳା, ତାଙ୍କ ଯଶ ତାଙ୍କ ପୌରୁଷ, ତାଙ୍କ ଖ୍ୟାତି, ତାଙ୍କ ଗୌରବ, ତାଙ୍କ ନାମ, ସଂସାରରେ ଯାହା କିଛି ସବୁ, କିଛି ଦିନ ପାଇଁ ।

ଦିନ ସାରା କୃତ୍ତିବାବୁ ଏହି ବିଷୟରେ ମଗ୍ନ ରହିଲେ । ତା'ପରେ ଶେଷରେ ନିଶ୍ଚୟ କଲେ କି ଆପଣା ଶିଷ୍ୟଙ୍କ ମଧ୍ୟରୁ ଯେ ସବୁଠାରୁ ଅଧିକ ଯୋଗ୍ୟ, ତାକୁ ନିଜର ଶ୍ରେଷ୍ଠ ବିଦ୍ୟା ଶିଖାଇ ଦେବେ ।

କିଛିଦିନ ମଧ୍ୟରେ ମଧ୍ୟ ଗୁରୁଙ୍କର ସବୁଠାରୁ ପ୍ରିୟ ଶିଷ୍ୟ ହୋଇଗଲେ । ମନ ପ୍ରାଣ ନିଯୋଗ କରି କୃତ୍ତିବାବୁ ତାକୁ ସଂଗୀତ ଶିଖାଇବାକୁ ଲାଗିଲେ । କିଛିଦିନ ପରେ ମଧ୍ୟ ବୀଣା ବଜାଇବାରେ ଅତୀବ ନିପୁଣ ହୋଇ ଉଠିଲା । ତା'ର ବୁଦ୍ଧିମତ୍ତା ଓ ନିପୁଣତା ଦେଖି କୃତ୍ତିବାବୁଙ୍କ ମନ ଖୁବ୍ ମୋଟ ହୋଇଗଲା । "ମୋ ନାମ, ଓ ମୋ କଳା ଅବଶ୍ୟ ଏ ଧରାପୃଷ୍ଠରେ ଜୀବିତ ରହିବ"—ଭାବି ଭାବି ଅଶେଷ ଆନନ୍ଦ ଲାଭ କଲେ ।

କିନ୍ତୁ ଗୁରୁଙ୍କର ଆଶାର ଅନ୍ତ ରହିଲାନି କିଛିଦିନ ପରେ, ଯେତେବେଳେ ସେ ଦେଖିଲେ କି ମଧ୍ୟ ସେହି ରାଗିଣୀ ଠିକ୍ ବଜାଇ ପାରୁନାହିଁ—ଯାହା ଗୁରୁଙ୍କର ସବୁଠାରୁ ଦିଗ୍‌ବିଜୟ ଓ ସବୁ-

ତାଙ୍କ ପ୍ରିୟ ବନ୍ଧୁ । ସେମାନଙ୍କ ମଧ୍ୟ ବହୁତ ନିପୁଣତା ଦେଖାଉଥିଲା, କିନ୍ତୁ ତା ବୀଣାରୁ ଏହି ରାଗିଣୀରେ ପୀଡ଼ା ଓ ବେଦନାର ସୁର ଜାତ ହେଉନାହିଁ—ଯାହା ଗୁରୁ କୃଷ୍ଣବାବୁଙ୍କ ବୀଣାରୁ ବାହାରୁଥିଲା । ଏହି ରାଗିଣୀରେ ଗୁରୁଙ୍କ ହୃଦୟ ବୀଣାର ଝଙ୍କାର ଯାହାଟି ଜଡ଼ିତ ହେଉଥିଲା । ମଧୁ ଏହା ବଜାଇ ନେଉଥିଲା, କିନ୍ତୁ ଏଥିରେ ଭାବନା ଆସୁନାହିଁ ।

ଗୁରୁଙ୍କ ପାଇଁ ତାର ଚିନ୍ତା ନ ଥିଲା । ଏହି ରାଗିଣୀକୁ ତ ଗୁରୁ ଅମର କରିବାକୁ ଚାହୁଁଛନ୍ତି । ମଧୁ ଯଦି ଏହା ସୁଖ ନପାଉଛନ୍ତି, ତା'ହେଲେ ତାର ସବୁ ସମୟ, ସବୁ ମେହେନତ, ଆଉ ସବୁଠାରୁ ଅଧିକା—ଆଶା ଓ ଅଭିଳାଷ ନଷ୍ଟ ହୋଇଯିବ । ଅଦ୍ଭୁତ ମଧ ଗୁରୁ ଜାଣିଛନ୍ତି—ମଧୁ ଏଥିରେ ଯଦି ସୁଖ ନ ପାଉଛି, ତାହେଲେ ତାର ଆଉ କୌଣସିଥିରେ ସୁଖ ପାଇବାର ଯମତା ନାହିଁ ।

ଏଷଣି ଗୁରୁ କଣ କରିବେ ? କେଉଁ ଉପାୟରେ ମଧୁର ହୃଦୟରେ ଭାବନାର ରେଖା ସଞ୍ଚାର କରିବେ ? କିପରି ବା ତା ଅନ୍ତସ୍ଥଳରେ ବେଦନାର ଅନୁଭବ କରାଇବେ ?

ଏମିତ ଭାବୁଁ ଭାବୁଁ କିଛିକ୍ଷଣ ପରେ, ହଠାତ୍ ଗୁରୁଙ୍କ ମୁଖ ପ୍ରସନ୍ନ ହୋଇ ଉଠିଲା । ତାଙ୍କୁ କୌଣସି ବାଟ ଦେଖାଗଲା । ଏକ ତୃପ୍ତିର ନିଶ୍ୱାସ ତ୍ୟାଗ କଲେ । ଫେରି ଶୁଭ ପ୍ରେମରେ ମଧୁକୁ ବୀଣା ଶିଖାଇବାକୁ ଲାଗିଲେ ।

କୃଷ୍ଣବାବୁ ମଧୁ ଓ ତାଙ୍କ ଝିଅକୁ ମିତ୍ରତା-ସୂତ୍ରରେ ବାନ୍ଧି ଦେଇଥିଲେ । ଝିଅଟି ତାଙ୍କର ଏକମାତ୍ର ସମ୍ବଳ, ଓ ତାଙ୍କ ସ୍ନେହ ଓ ସମ୍ପତ୍ତିର ଏକମାତ୍ର ଅଧିକାରିଣୀ । କୃଷ୍ଣବାବୁଙ୍କର ସଂସାରରେ ଦୁଇଟି ସାଧନା ଥିଲା—କନ୍ୟାର ସ୍ନେହ ଆଉ ସଙ୍ଗୀତ ।

ଦୁହିଙ୍କର ଶଙ୍କା ଦୂରିଭୂତ ହୋଇ ଯିବା ପରେ, ଧୀରେ ଧୀରେ କୃଷ୍ଣବାବୁ ତାଙ୍କ ମିତ୍ରତା ବଢ଼ାଇବାକୁ ପ୍ରଶ୍ରୟ ଦେଲେ । ଏବେଣି ଦୁହେଁ ଅଭିନ୍ନ ମିତ୍ର ପାଲଟି ଗଲେ—ବାଳିକା ମଧୁର ସଙ୍ଗୀତରେ ମୁଗ୍ଧ !

ଏମିତି କିଛିଦିନ ବିତିଗଲା ପରେ କୃଷ୍ଣବାବୁ ଦୁହିଁଙ୍କି ବିଭା କରିଦେଲେ । କନ୍ୟା ଓ ଶିଷ୍ୟ ଦୁହିଁଙ୍କି ଦେହେଁ ଏ ସମ୍ବନ୍ଧ ଓ ଯୌବନ-ବନ୍ଧନକୁ ହୃଦୟରେ ସ୍ୱୀକାର କଲେ—ବିବାହର ଉପ-ରାନ୍ତରେ ଏହି ଦୁହିଙ୍କ ମିତ୍ରତା ଗଭୀର ପ୍ରେମର ରୂପ ଧାରଣ କଲା । ଜଣେ ଅନ୍ୟ ଜଣଙ୍କ ବିନା ଶାନ୍ତି ପାଉ ନଥାଏ । ଏଣେ ସୁଖର ଆଧିକ୍ୟ ହେଲା, ତେଣେ ମଧୁର ସଙ୍ଗୀତ-ବିଦ୍ୟାରେ ମାନ୍ଦା ପଡ଼ିଲା । ପତ୍ନୀର ପ୍ରେମରେ, ସୁଖରେ ଏତେ ବୁଡ଼ି ଯାଇଥିଲା ଯେ ତା ନିଜ ବୀଣାରେ ବି ଏବେଣି ଏତେ ପ୍ରେମ ନ ଥିଲା !

ଗୁରୁ କୃଷ୍ଣବାବୁ ଦେଖିଲେ ଯେ ସବୁ ତାଙ୍କ ମନ ଅନୁସାରେହିଁ ହେଉଛି । ଏହି ଦୁ ଜଣଙ୍କ ପ୍ରେମ ଦେଖି ଦେଖି, ଅତ୍ୟନ୍ତ ସୁଖୀ ହେଉ ହେଉ ପରକ୍ଷଣରେ ତାଙ୍କ ହୃଦୟ ପୀଡ଼ାରେ ଭରି ଉଠୁଥାଏ ଓ ନେତ୍ର ଲୋତକରେ ଛଳ ଛଳ ହେଉଥାଏ । ସବୁଠାରୁ କଠିନ କାମ ତ ବର୍ତ୍ତମାନ ଶେଷ ହୋଇ ଯାଇଛି ।

ଅଧରାତି ସମୟ । କୃଷ୍ଣବାବୁ ନିଜ କୋଠରୀରେ ବସି ଥାଆନ୍ତି । ତାଙ୍କ ଆଖିରୁ ଅଶ୍ରୁ-ବର୍ଷଣ ହେଉଥାଏ ଆଉ ସେ ବ୍ୟାକୁଳ ହେଉଥାନ୍ତି । ସାରା ରାତି ସେ ଏହିପରି ହଉଥାନ୍ତି— "ହାୟ, ମୁଁ କଣ କଲି ! କଲା ପାଇଁ କନ୍ୟା-ହତ୍ୟା !" କୃଷ୍ଣବାବୁ ଆଜି ରାତିରେ ନିଜ କନ୍ୟାକୁ ବିଷ ଦେଇ ଦେଇଥିଲେ । କାହିଁକି ? ସେ ତ ଜାଣନ୍ତି । ତା'ପରେ ବାରମ୍ବାର ମଧ୍ୟ ଅସ୍ଫୁଟ ସ୍ୱରରେ କହୁଥାନ୍ତି—"କଳା ପାଇଁ କନ୍ୟା-ହତ୍ୟା ?" ହୃଦୟର ବେଦନା

ମନ୍ଦି ଦେଉଥିଲା ତାଙ୍କୁ । ଅନ୍ତସ୍ଥଳରେ ତାଙ୍କର ଭୀଷଣ ଝଡ଼ର ରୋଳ ଉଠିଥିଲା ।—ସେ ଠିକ୍ କରିଛନ୍ତି ? କଳା ପାଇଁ କନ୍ୟା-ହତ୍ୟା—ଓଃ, କଣ କଲେ ସେ ! ତାଙ୍କ ନୟନର ମଧି ଗଣ୍ଡି ଧନ ଏକୋଇ ବ୍ରିଶିକେଶନ କନ୍ୟା—ତାଙ୍କ ସ୍ନେହ ଓ ଆଦରର କନ୍ୟା—ତାଙ୍କର ଏକମାତ୍ର ସନ୍ତାନ ଓ ସମ୍ବଳ କନ୍ୟା—ମୃତ ପତ୍ନୀର ଏକ-ମାତ୍ର ଜାଗ୍ରତ ପ୍ରତ୍ୟକ୍ଷ ସ୍ମୃତି—! ଓଃ ! କୃତ୍ତିବାବୁ ପାଗଳ ହୋଇ-ଯିବେ ! ପରଦିନ ସକାଳ ହେଲା ବେଳକୁ ମରି ଶୋଇଥିବେ—ଅଭି ମଧୁ—ଓଃ, ଭଗବାନ !

ତଡ଼ିତ୍ ବେଗରେ ଦୌଡ଼ି ଦୌଡ଼ି ମଧୁ ସେଠି ପହଞ୍ଚିଲେ ଅଭି କୃତ୍ତିବାବୁଙ୍କ ପାଦ ତଳେ ଲମ୍ବଧମ୍ବ ହୋଇ ପଡ଼ିଲେ—ସେଇ-ମିତ ପଡ଼ିଥାଏ । କୃତ୍ତିବାବୁଙ୍କ ହୃଦୟ କମ୍ପି ଉଠିଲା ।

ରାତରେ କୃତ୍ତିବାବୁ ନିଜ କୋଠରିଟିରେ ବସି ଥାଆନ୍ତି । ମଧୁର ଦୁଃଖ ଦେଖି ତାଙ୍କ ହୃଦୟ ଫାଟି ଯାଉଥାଏ । ଏହି ଅନର୍ଥର ଗୋଡ଼ା ସେ—କେବଳ କଳା ପାଇଁ କନ୍ୟା ହତ୍ୟା କରୁଛନ୍ତି ? ତାଙ୍କ ମସ୍ତିଷ୍କର ବିକୃତ ଘଟିଛି—ଆଖିରୁ ଲୁହ ବହୁଥାଏ ।

ହଠାତ୍ ସେ ଅତ୍ୟନ୍ତ ଗଭୀର ବେଦନାଯୁକ୍ତ ମର୍ମଦାହୀ ସଙ୍ଗୀତର ଝଙ୍କାରଟିଏ ଶୁଣି ପାରିଲେ । ଆରେ ! କିଏ ତାଙ୍କ ପ୍ରିୟ ରାଗିଣୀକୁ ଅତ୍ୟନ୍ତ ବେଦନା ଓ ପୀଡ଼ାରେ ଭରି ବଜାଉଛନ୍ତି । ତା'ର ଗୋଟିଏ ଗୋଟିଏ ଝଙ୍କାର ହୃଦୟର ଅନ୍ତରତମ ପ୍ରଦେଶରୁ ନିର୍ଗତ ହେଉଛି । କୃତ୍ତିବାବୁ ଚମକି ପଡ଼ିଲେ—ଆରେ ! କିଏ ତ ତାଙ୍କୁ ବି ତନ୍ମୟ କରିଦେବ ! ଉଠିଲେ—ସେଇଆଡ଼େ ସୁର-ଲହରୀ ଗଗନ ପବନ ମୁଖରିତ ଓ ମନ୍ଦ୍ର-ଧ୍ୱନିତ କରି ଭାସି ଆସୁଥିଲା, ସେଇ ଆଡ଼କୁ ପାଦ ବଢ଼ାଇଲେ । ଧୀରେ ଧୀରେ ଗଲେ । ଆରେ ! ଏ କଣ ?—

ସେ ଦେଖିଲେ – ମଧୁ ଖଟ ଉପରେ ବସି ବୀଣା ବଜାଉଛନ୍ତି ! ଆଜି ସେଥିରୁ ଏତେ ପୀଡ଼ା ଓ ବେଦନାର ସ୍ୱର ନିର୍ଗତ ହେଉଛି ! ମଧୁର ମୁଦ୍ରିତ ନୟନଯୁଗଳରୁ ଶ୍ରାବଣର ବାରିଧାରା ପରି ଲୋତକ-ରେଖା ଟୋପା ଟୋପା ହୋଇ ଝରି ଗଳୁଛି ।

କୃଷ୍ଣବାବୁ ଆଉ ମୁହୂର୍ତ୍ତେ ଧୈର୍ଯ୍ୟ ଧରି ରହି ପାରିଲେ ନା । ପାଗଳଙ୍କ ଭଳି ଦୌଡ଼ିଯାଇ ମଧୁକୁ କୁଣ୍ଢାଇ ପକାଇ ତାଙ୍କ ଗଣ୍ଡରେ ଭିଡ଼ି ଧରିଲେ ।

# ଗୁପ୍ତଗୁହା

—୧—

ସେତେବେଳେ ସିନ ପଢୁଥାଏ ରେଭେନ୍ସା କଲେଜରେ । ଦିନ ଗୁଡ଼ିକ ତାର ସଙ୍ଗୀମାନଙ୍କ ସାଥିରେ କଟି ଯାଉଥାଏ ଭାରି ମଉଜରେ ଓ ସୁଖରେ । ବଡ଼ଲୋକ ! ଘରୁ ପଠାନ୍ତି ବାପା ମାସକୁ ସ୍ଵର୍ଣ୍ଣଶତି ଲେଖାଏଁ ମୁଦ୍ରା । ଅଭାବ ବା ତାର କଣ ? କିନ୍ତୁ ନିୟତିର ଗତି, ସମନ୍ୟର ସ୍ରୋତ ! ଯମପୁରରୁ ଅସିଲା ତା ବାପାଙ୍କ ପାଖକୁ ଡାକ । ଗଲେ ସେ କାହାକୁ ଉପେକ୍ଷା ନ କରି । ତାଙ୍କ ପଛେ ପଛେ କାଳ ବିଳମ୍ବ ନ କରି ସ୍ଵାମୀଙ୍କୁ ଅନୁସରଣ କଲେ ମାଳତୀଲତା— ତା ବୋଉ । ତାକୁ କେହି ଦେଲେ ଟିକିଏ ଶୁହିଁଲେ ନାହିଁ । ବର୍ତ୍ତମାନ ସଂସାର-ସାଗରରେ ନାବିକ ସେ ଏକା । ବାହା ହବାକୁ ବାପା ଜିଦ୍ କରୁଥିଲେ । ସେଥିଲାଗି ନକରି ବୁଦ୍ଧିମତାର ପରିଚୟ ଦେଇଛି ।

"ବାପା ସିନ, ମୋ କଥା ମାନ ଯେଉଁଠି ବାହା ହ । ଦେଖ୍ ହକାରେ ଠିକ୍ । କୁଆଡ଼େ ଅଛେ ? ତା ପରେ ତ ସିଏ ଅଛି । ହେଲା ଟିକିଏ କାଳୀ, ସେଥିରୁ କଣ ହେଲା ? ଗଢ଼ଣଟା ତ ଅଛି । ସୁନ୍ଦରରୁ କଣ ପାଇବୁ ? ଗୁଣ ଥିଲେ ତ ହୁଏ । କୋକିଳ ତ କଳା । କିନ୍ତୁ ସମସ୍ତେ ତାକୁ ପ୍ରଶଂସା କରନ୍ତି । କାହିଁକି ?— ତା ମିଠା କଥାର

ମଧୁର ସ୍ୱର ପାଇଁ । ଯା ହଉ, ମୋ କଥା ମାନ । ବାପଟା ଧନଟା ପରି । ସେଇଠି ବାହା ହ ।"

ସୁନ ବାପାଙ୍କ କଥା ସବୁବେଳେ ମାନି ଚଳେ । କିନ୍ତୁ ଆଜି ସେ ପ୍ରତିବାଦ ନ କରି ରହି ପାରିଲା ନା । "ବାପା, ମୁଁ ଘର ଗୋଟେ ବାଳିକାର ସମ୍ପତ୍ତି ଉପରେ ନିର୍ଭର କରି ରହି ପାରିବି ନାହିଁ । ଦାଣ୍ଡର ଭିକାରି ପଛକେ ହେବି, କାହାର ଅଧୀନତା ସ୍ୱୀକାର କରିବି ନାହିଁ ।"

'ସୁନ ସେଦିନଠାରୁ ବାପାଙ୍କୁ ତାର ଆଉ ଦେଖିନାହିଁ — ପଢ଼ା-ପଢ଼ି ଛାଡ଼ି ଗାଁକୁ ଆସିଲା ହଠାତ୍ ତାଙ୍କ ମୃତ୍ୟୁ ସମ୍ବାଦ ପାଇ । ତାର ମା,ସେ ନ ଯାଉଣୁ ଚାଲିଲେ ମାଳତୀଲତା ଆଉ ପୁଅକୁ, ଏକମାତ୍ର ସମ୍ବଳ ପୁଅକୁ ତାଙ୍କର ଶୁଭାଶୀଷ ଅର୍ପଣ କରି ।

ତୁ ଭାବ ନା ଯେ ତୋ ବାପାଙ୍କୁ ଅସନ୍ତୋଷ କରିବୁ । ତୋ ପ୍ରଶଂସା ଗାଇ ଗାଇ ଜୀବନ ତ୍ୟାଗ କରିଚନ୍ତି ସେ । ଶେଷ ସମୟରେ କହିଯାଇଚନ୍ତି ସେ—ବଂଶମର୍ଯ୍ୟାଦା ତାଙ୍କର ରକ୍ଷା କରିବୁ । ସେ ତୋର ଗତିବିଧି ଉପରେ ଥାଇ ଲକ୍ଷ୍ୟ କରୁଚନ୍ତି । ମୁଁ ବି ସେୟା କରିବି । ଭଗବାନ ତୋତେ ଶକ୍ତି ସାମର୍ଥ୍ୟ ଓ ବୁଦ୍ଧି ଦେଇଚନ୍ତି, କିନ୍ତୁ ମୁଁ—ଆଶୀର୍ବାଦ"—ଏ ଜଗତରୁ ବିଦା ହେଲାବେଳେ ଏତକ କହିଗଲେ ମାଳତୀଲତା ।

—୨—

ନିଜ ଘର ସମ୍ମୁଖରେ ଦୃଶ୍ୟାବଳୀ ସ୍ପର୍ଶକଲା ସୁନର ହୃଦୟ-ତନ୍ତ୍ରୀ । ବୁଢ଼ା, ବିଧବା ଓ ସାଧାରଣ ଲୋକେ ଭବିଷ୍ୟତର ଉଚ୍ଚ ଆଶା ପାଇଁ ବାପାଙ୍କ ପାଖରେ ତାର ଜମା ରଖିଥିଲେ ଟଙ୍କା—ଆଜି

ସେମାନଙ୍କ ମୁଖ ବିଷାଦର କାଳିମା ରେଖାରେ ଅଙ୍କିତ । କେତେକ ସାମନାରେ ତାର ତାଙ୍କ ଚଉଦ ପୁରୁଷର ପିଣ୍ଡ ନ ଗାଳି ଛାଡ଼ୁ ନାହାନ୍ତି । କେତେ ସହିବ ସେ ? ଘରେ କିଛି ଅଧଲଟିଏ ନାହିଁ । ସେମାନଙ୍କୁ କପରି ସନ୍ତୁଷ୍ଟ କରିବ ? ଭାବି ଭାବି ଶେଷରେ ଘରେ ଯାହା ଥିଲା ସବୁ ଉତ୍ତମଣ ସମିତିଙ୍କ ହାତକୁ ବଢ଼ାଇ ଦେଲା । ଦହରେ ଖଣ୍ଡେ ଲୁଗା ନାହିଁ—ସେଥିରେ ଘର ଛାଡ଼ି ବାହାରିଗଲା ସେ ।

"ଭଗବାନଙ୍କର କୃପାଦୃଷ୍ଟି ଯଦି ମୋ ଉପରେ ପଡ଼େ, ସମସ୍ତଙ୍କ ଟଙ୍କା ସୁଧ ସହିତ ଅଚିରେ ପରିଶୋଧ କରିବି । ବାପାଙ୍କର ଉପଯୁକ୍ତ ପୁଅ ନ ହେବାଯାଏ, ଏ ମୁହଁ ତୁମ୍ଭମାନଙ୍କୁ ଦେଖାଇବି ନାହିଁ ।"—ବିନ ଆଉ ତା ଆଡ଼କୁ ନ ଅନାଇ ଚାଲିଗଲେ ତା ନିଜ ଉଦ୍ଦେଶ୍ୟ-ପଥରେ ।

\+ \+ \+ \+

ଅସ୍ତଗାମୀ ସୂର୍ଯ୍ୟଦେବଙ୍କର ସ୍ୱର୍ଣ୍ଣ-କିରଣ ଦ୍ୱାରା ଛେଉ ପତ୍ର ସବୁ ସୁନା ପାଲଟିଗଲେ । ବିନ ଭଗବାନଙ୍କ ସାଙ୍ଗରେ ସାକ୍ଷାତ କରିବା ଲାଗି ଛୁଟା ହେଉଥାଏ । ଦୂରରେ—ଅଳ୍ପ ଦୂରରେ, ସୁନାର ଢେଉମାନ ସମୁଦ୍ର-ବକ୍ଷରେ ନାଚି ନାଚି ଆସୁଥାନ୍ତି, ଆଉ ଭାସି ଆସୁଥାଏ ତାଙ୍କର କୋମଳ କଲ୍ଲୋଳ ତାନର ଅବିରାମ ସ୍ୱର । ବାଜିଲା ଅସି ଏଇ ସ୍ୱର ବିନର କୋମଳ ହୃଦ-ତନ୍ତ୍ରୀରେ—କରି-ଦେଲା ତାର ନୟନ ଓ ମନକୁ ଏକବାରେ ମୁଗ୍ଧ । ପିଲାଦିନେ ସେ ନାଆ ଖେଳାକୁ ଭାରି ଭଲ ପାଉଥିଲା—ଏକା ନଦୀ ବକ୍ଷରେ ସେ ଅନେକ ଦୂର ଚାଲିଯାଏ । ଏକା ବି ସମୁଦ୍ରର ଅତଳତଳ ତୀରକୁ ବୁଡ଼ିଯାଏ କାହାର ପ୍ରତି ଭୟ ଓ ଭ୍ରାନ୍ତି ନ ରଖି । କହିବାକୁ ଗଲେ ଜଳଟା ଥିଲା ତା ଘର ।

"ଭଗବାନ, ମତେ ସେଇଠିକି ନେଇଯାଅ, ଯେଉଁଠି ପିତୃଋଣ ମୋର ପରିଶୋଧ କରି ପାରିବି । ସ୍ୱର୍ଗରେ ଥାଇ ବାପା ଓ ବୋଉ ସୁତକ ପରି ଅନାଇଥାନ୍ତୁ ମୋ ଆଡ଼କୁ । ଏତକି ମାତ୍ର ମୋର ପ୍ରାର୍ଥନା ।" ଈଶ୍ୱରଙ୍କୁ ଡାକୁ ଡାକୁ ଘାସ ଉପରେ ବସି ପଡ଼ିଲି । ମୁହୂର୍ତ୍ତକ ପାଇଁ ଜଡ଼ ପାଲଟିଗଲେ । ନିକଟବର୍ତ୍ତୀ ବନର ବୃକ୍ଷଲତା-ଗୁଳ୍ମରାଜିମାନଙ୍କର ଅପରୂପ ମନଲୋଭା ଶୋଭା, ତରଙ୍ଗାୟିତ-ସାଗରର ଘୋ ଘୋ ଗର୍ଜନ ଓ ଲହରୀମାନଙ୍କର ଦୃଶ୍ୟ, ଦୂରରେ ପର୍ବତର ନୀଳ ଆଭା, ଚକ୍ରବାଳରେ ଦୂର ଗଗନର ଲୋହିତ ଛବି ଓ ଅସ୍ତଗାମୀ ସୂର୍ଯ୍ୟଙ୍କ କନକ କିରଣ ମନକୁ ତାର ମୋହିତ କରିଦେଲା—କ୍ଷଣକ ପାଇଁ ହୋଇଗଲେ ସେ ମୋହରେ ଉନ୍ମାଦିତ—ପାଗଳ !

—୩—

ସଙ୍ଗୀତର ମଧୁର ସ୍ୱରରେ ବନର କଳ୍ପନା-ରାଜ୍ୟରେ ଭ୍ରମଣ କରିବାର ମୋହ ଭାଙ୍ଗିଗଲା । ଜଣେ ସ୍ତ୍ରୀର କଣ୍ଠ-ସ୍ୱର, ଏବଂ ଏଇ ଜନମାନବଶୂନ୍ୟ ପ୍ରଦେଶରେ ?—ତାପରେ ଦସ୍ୟୁମାନଙ୍କର ଅତି ଜଘନ୍ୟ ନିର୍ଦ୍ଦୟତା ଓ ହତ୍ୟାର ପ୍ରତିପାଦନର ଲୀଳା-ଭୂମୀ !—କି ବିପଦଜନକ !

— କିଏ ସ୍ୱପ୍ନ ଦେଖୁଛି ?

ଗୀତର ସ୍ୱର ଭାସି ଆସିଲା ମୁକ୍ତ ବାୟୁରେ । ବାଜିଲା ତା କାନରେ — ହେଲା ସ୍ପଷ୍ଟରୁ ସ୍ପଷ୍ଟତର ।

— ଗାୟିକା କିଏ ଦୁଃଖିତା ?

ଶୁଣିଲା ସେଇ ଆଡ଼କୁ ସେ, ଯେଉଁଆଡ଼ୁ ଭାସି ଆସୁଥିଲା ଉଚ୍ଛୁଳାଇ ଗଗନ ପବନ ସେଇ ସ୍ୱର-ଲହରୀ—ଜଣାଗଲା ଯେମିତ

ତା ପାଦତଳ୍ପ ଶବ୍ଦ ପ୍ରତି ପଦାକୁ ବାଦ୍ଧାରୁଥ । କିନ୍ତୁ ତାର ଗ୍ଭରି-ଅଡ଼େ ତ ବୃକ୍ଷଲତାଗୁଳ୍ମ ପାହାଡ଼ ପର୍ବତ ଆଉ ସମୁଦ୍ର ! ଶେଷରେ ଦୂରବୀକ୍ଷଣ ଚକ୍ଷୁ ତାର ପାଇଲା ଏକ ପଥର ସନ୍ଧାନ । କଲା ଅନୁସରଣ—ଶେଷରେ ଦେଖିଲା ସେ ଗୋଟେ ଗୁହା ମୁହଁରେ ।

"ଦସ୍ୟୁ-ଗୁହା"—ନିଜକୁ କହିଲା । "ବିପଦ୍‌ସଂକୁଳ । କିନ୍ତୁ ଭିତରକୁ ବାଳକାଟିଏ ଆସିଲା କିପରି ? ଏ କଣ ଯାଦୁ-ବିଦ୍ୟା ?"

ବିନ ପଗ୍ଭରିଲା ତା ମନକୁ—କିନ୍ତୁ ପ୍ରତ୍ୟୁତ୍ତର ତାର ଆସିଲା ସେଇ ଦୁଃଖପୂର୍ଣ୍ଣ ସଙ୍ଗୀତର ସ୍ୱର ଦେଇ । ଏ ତ ଚିରିବର ଦେବତା ଭଗବାନଙ୍କୁ କାତର ପ୍ରାର୍ଥନା ! ଭାବିଲା—ଯିବ ଭିତରକୁ, କିନ୍ତୁ ତା ଭାବନା ଓ କାମ ଭିତରେ ନ ଥାଏ ମିନିଟେକର ତଫାତ ।

+ + + +

ଅନିନ୍ଦ୍ୟସୁନ୍ଦରୀ ସ୍ୱର୍ଗର ଅପ୍ସରୀ ପରି ବାଳକାଟିଏ ଦୂର-ନୀଳ-ତେଉମାଳା ବିଶିଷ୍ଟ ଅବିରାମ ନୃତ୍ୟକାରୀ ନୀଳ ସମୁଦ୍ର ଆଡ଼କୁ ଅନାଇଥାଏ, ଝରକାଟି ପାଖରେ ବସି । ସୂର୍ଯ୍ୟଦେବଙ୍କର ବିଦାୟ-କାଳୀନ ରକ୍ତ-ବର୍ଣ୍ଣରେ ଘରଟି ରଞ୍ଜିତ ଓ ଅଲୋକିତ ।

ବାଳକାଟି ଲୋକଟି ଆଡ଼କୁ ଟିକିଏ ଅନାଇ ମୁହଁ ଫେରେଇ ନେଲା—ବୋଧହୁଏ ତାକୁ ଖାତର କଲା ନାହିଁ । ଝରକା ଆଡ଼କୁ ମୁହଁ ବୁଲାଇ, ପୂର୍ବପରି ତାର ସେଇ ସଙ୍ଗୀତର ତାନ ଛାଡ଼ିଲା ।

କିନ୍ତୁ ବିନ ସେଇମିତ ଛିଡ଼ା ହୋଇଥାଏ ସେଠି ସ୍ତମ୍ଭୀଭୂତ ହୋଇ ।—ପୁଣି କଣ ଏ ସ୍ୱପ୍ନ ?—ଗୀତ ଓ ଗାୟିକା ତ ସତ !

ଗୀତ ସରିବା ମାତ୍ରେ ଗ୍ଲୁଲା ସିଧା ସିଧା ଆଗକୁ— ପଚ୍ଚାରିଲା, "ତରୁଣୀ, ତୁମେ ଏକାକୀ ଏଠି କିପରି ? ଏ ତ ଦସ୍ୟୁ-ମାନଙ୍କର ଗୁମ୍ଫା ।"

ଏ କଥାରେ ବାଳକାଟି ଚମକି ପଡ଼ିଲା, ଆଉ ବିଦେଶୀଟିକୁ ଅତି ତୀକ୍ଷ୍ଣ ଦୃଷ୍ଟିରେ ନିରୀକ୍ଷଣ କଲା ।

"ତୁମେ କଣ ତା ଭିତରୁ ଜଣେ ନୁହଁ ?" ସେ ପଚ୍ଚାରିଲା, "ତୁମେ ଏଠି କିପରି ?" ଗ୍ଲୁଲା— "ସତେ କଣ ନୀଳାଚଳର ନାଥ ତ୍ରାଣର ଦେବତା ଭଗବାନ ମୋର ଏଥର ମୋ ଡାକ ଶୁଣିଚନ୍ତି ?"

+ + + +

କଥାଗୁଡ଼ିକ ତାର କି ସରଳ !

ଦସ୍ୟୁମାନେ ତାକୁ ଧରି ଆଣି ରଖିଚନ୍ତି । ତାକୁ ମୁକ୍ତ ଦେବା ମାନସରେ ସେମାନେ ପ୍ରଚୁର ଅର୍ଥ ପାଇଁ ଦାବୀ କଲେ ତା ବାପାଙ୍କ ପାଖରେ—ବାପା ବି ତାର ଖୁବ୍ ବଡ଼ଲୋକ !

"କିନ୍ତୁ ସେ କେବେଁ ଦେବେ ନାହିଁ"—ବାଳକାଟି କାତର କଣ୍ଠରେ କହିଲା । "ମୁଁ ଆଉ କୁମାରୀ ନାହିଁ—ଏଥଣି ଏମାନଙ୍କ ଦଳପତିର ଗୃହିଣୀ । ସେ ମତେ ନରକର ପଥକୁ ଟାଣି ନେଇଛି । କିନ୍ତୁ ମୁଁ ସବୁବେଳେ ଭଗବାନଙ୍କୁ ଡାକୁଛି । ତାଙ୍କରି ଇଚ୍ଛା— ଏଥଣି ବି ଜାଣି ପାରୁଚ ବାପା ମୋର ଟଙ୍କା ଦେବେ ନାହିଁ । ସେ ସବୁ ଦାବୀ ପାଇଁ ପ୍ରସ୍ତୁତ ହେବେ—ନିଜର ଜୀବନ ବି—ଯଦି, ଯଦି ଜାଣି ପାରନ୍ତି । ଯାଅ, ତାଙ୍କୁ ଠିକିଏ ଧୋକା କରି କୁହ । ଆଉ ଡେରି କର ନାହିଁ । ଏଠୁ ଗ୍ଲୁଲିଯାଅ—ଏଠି ରହିବା ମାନେ ଜୀବନର ଆଶା ପରିତ୍ୟାଗ କରିବା ।"

"ଏତେ ଶୀଘ୍ର ନୁହେଁ"—ଉତ୍ତର ଦେଲ ବନ, ଅଣ୍ଟାରୁ ଛ ନଳଥିବା ରିଭଲଭରଟିଏ ଖୋଲି। ଗୁରିଅଡ଼େ ଥରେ ଅଖି ବୁଲେଇ ଦେଲା। ତା ପରେ ଛୁରୀଟିଏ କାଢ଼ି ହାତରେ ଧଇଲା।

"ଏ ସାତ ଜଣଙ୍କ ପାଇଁ"—ପକେଟରେ ଛୁରୀଟି ରଖୁଁ ରଖୁଁ କହିଲା।

"କିନ୍ତୁ ସେମାନେ ଯେ ସତେଇଶ ଜଣ"—ବାଳିକାଟି ଚିତ୍କାର କରି କହିଲା। "ଅଧିକନ୍ତୁ ମଧ୍ୟ ଏ ଗୁହାଟି ରହସ୍ୟମୟ। ଜାଣେ ନା, ଏଇକ୍ଷଣି ବା ଏଠି ରହି କେହି ଆମ କଥା ଶୁଣୁଛ କି। ଯାଅ—।"

"କିନ୍ତୁ ତୁମେ କାହିଁକି ଅସୁନାହଁ ?"

"ଆଉ ତା ପରେ ?"—ବିକଟ ହାସ୍ୟ ହସି କହିଲା ବାଳିକାଟି। "ଭଗବାନ ମତେ ଏଠିକି ଅଣିଛନ୍ତି। ମୋ ପାଇଁ ଏଟା ଜୀବନ୍ତ-ସମାଧି। ଏପରି ଭାବରେ ମତେ ଶାସ୍ତି ଦେବାରେ ତାଙ୍କର କି ଆନନ୍ଦ ସେ ଜାଣନ୍ତି। ରକ୍ଷା ପାଇବାର ଯୋଗ୍ୟା ନୁହେଁ ମୁଁ। ବର୍ତ୍ତମାନ ସ୍ତ୍ରୀ ମୁଁ—ଜଣେ ଦସ୍ୟୁ ନରହନ୍ତା ମଦ୍ୟପାୟୀ ପିଶାଚର। ହାଃ, ହାଃ। କିପରି ମୋ ବାପାଙ୍କ ମୁହଁରେ ମୁଁ କଳଙ୍କ କାଳିମା ଲେପନ କରିବି ?"

\+ \+ \+ \+

"ଯାଅ—"

ବର୍ତ୍ତମାନ ଏଟା ଅନିବାର୍ଯ୍ୟ।

"ଯେପରି ଅସହାୟା ବାଳିକାଟି ପ୍ରତି ବଳ ପ୍ରୟୋଗ ନ କରାଯାଏ।"

"ପ୍ରକୃତରେ ଯଦି ପୁରୁଷ ହୋଇଥାଅ, ଜଣେ ନିରବଳମ୍ବନା ଅବଳାକୁ ରକ୍ଷା କର—" ଏବଂ ପୁଣି ହସିଲୁ—"ପତିତା ଭଉଣୀଟିକୁ ତୁମର ସ୍ୱଜାତିଙ୍କ କବଳରୁ ରକ୍ଷା କର ।"

—୪—

ବାଳକଟି ଅଦୃଶ୍ୟ ହୋଇଗଲା— ତା ସାଙ୍ଗେ ସାଙ୍ଗେ ସୂର୍ଯ୍ୟ ମଧ ଚକ୍ରବାଳର ଲୋହିତ ଗଗନରୁ ନୀଳ ସମୁଦ୍ରକୁ ଡ଼ିଆଁଟାଏ ମାରି ଦେଇ କୁଆଡ଼େ ଲୁଚିଗଲେ । ଅନ୍ଧକାର ରଜନୀ-ରାଣୀ ଦ୍ରୁତ ଗତିରେ ଧରାପୃଷ୍ଠକୁ ଓହ୍ଲାଇ ଆସିଲା ।

ବିନ ଚାରିଆଡ଼କୁ ଚାହିଁଲା । ବଣରୁ ଚାଲିଯିବା ପ୍ରଶ୍ନଟା ତା ମନ ମଧରେ ମୋଟେ ଉଦ୍ରେକ ହେଲା ନାହିଁ—ବର୍ତ୍ତମାନ ସେ ମନୁଷ୍ୟ ବସତିର ବହୁତ ଦୂରରେ । ବଣ ବାଘ ଭାଲୁ ପ୍ରଭୃତି ହିଂସ୍ରଜନ୍ତୁରେ ପୂର୍ଣ୍ଣ । ସେ ଜାଣେ କଉଁଠି ସେ—ପିଲାଦିନେ ଏ ସ୍ଥାନଗୁଡ଼ ତାର ଚିରପରିଚିତ ଓ ଅତି ପ୍ରିୟ ଥିଲା—ନାଆଁରେ ଚିହ୍ନି ଆସୁଥିଲେ ଏଠାକୁ ସେ ଶୀକାର କରି । ମନେ ମନେ ସ୍ଥିର କଲା—ଆଜି ଯିବ ନାହିଁ, ରାତିଟା କଉଁଠି ଲୁଚି ରହିବ, ସକାଳ ହେଲେ ଯାଉଁ କଥା ।

× + + +

ପଛରୁ ପଦଶବ୍ଦ ଶୁଣି ଗଦାଏ କାଠ ପଛରେ ଲୁଚିଗଲା । ଜଣକ ପରେ ଜଣେ ଏପରି ଦଳର ସମସ୍ତେ ଭିତରକୁ ଗଲେ । ସେତେବେଳକୁ ରାତି ହୋଇ ଯାଇଥିଲା । ଅନ୍ଧାରରେ ମୁହଁକୁ ମୁହଁ ଦିଶୁ ନଥାଏ । ଘରେ ଆଲୁଅ ଜଳିଲା ।

ସମସ୍ତେ ବସିଚନ୍ତି—ଜଣେ ବଳିଷ୍ଠ ଲୋକ ଘରେ ପ୍ରବେଶ କଲା । ଚେହେରାରୁ ତାରି ଜଣା ପଡ଼ୁଥାଏ ତାଙ୍କର 'ସର୍ଦ୍ଦାର'

ବୋଲି । ତା ପରେ ଇଙ୍ଗିତ ମାତ୍ରେ ଆସିଲା ସୁରାର ବୋତଲ, ଅକଣ୍ଠ ପାନ କଲେ ପ୍ରତ୍ୟେକ, ମାଦକ ନିଶାରେ ହେଲେ ବିଭୋର । ଗୁଲିଲା ମଜଲ ମଜଲିସ — ହେଲା ଫୁର୍ତ୍ତି ।

"ସୁଷମା ଗାଇବ ନାହିଁ"—ହୁକୁମ ଦେଲେ ସର୍ଦ୍ଦାର । "ମୁଁ ତା କଣ୍ଠ-ସ୍ୱର ସ୍ପଷ୍ଟ ଭାବରେ ଖୁବ୍ ଦୂରରେ ବି ଶୁଣିପାରେ । ସୁଷମା—"ଡାକିଲେ ବଡ଼ ପାଟିରେ ।

ବାଳିକାଟି ଆସିଲାନି । ଠିକ୍ ଏ ତେର ବର୍ଷ ଭିତରକୁ ଆସିଲା । ସମସ୍ତଙ୍କ ମଝିରେ ବସିଲା । ଗୁରିପଟେ ତାର ଅନ୍ୟମାନେ ବସିଥାନ୍ତି ।

"ତେବେ ବି ବଡ଼ ଅବାଧ !—ଫିଟିବୁ ନାହିଁ ?"—ଏବଂ ତାର ଉତ୍ତର ଦେଲା ସେ ପୂର୍ବ ପରି ଘୃଣାରେ ବିରକ୍ତିର ମୁଖଭଙ୍ଗୀ ଦେଖାଇ ଓ ହାତ ଛୁଆଁଡ଼ି ।—ହସିଲେ ସମସ୍ତେ ।

"ତୋ ବାପା ତ ଏପର୍ଯ୍ୟନ୍ତ ଟଙ୍କା ପଠେଇଲେ ନାହିଁ—ଥାଉ ସେ କଥା । ସେଥିଲାଗି ଅବଶ୍ୟ ମୁଁ ତୋତେ କିଛି କହୁନାହିଁ । କିନ୍ତୁ ଜାଣୁ ସୁଷମା, ମୁଁ ତୋତେ କେତେ ଭଲପାଏଁ—" ଏବଂ ସର୍ଦ୍ଦାର ତାକୁ ଉଠାଇ କୋଳରେ ତାଙ୍କର ବସାଇଲେ । କିନ୍ତୁ ସୁଷମା ବାଧା ଦେଲାନାହିଁ ସେଥିରେ—ସେ ଯେ ତାର ଅଭ୍ୟାସରେ ପରିଣତ ହେଲାଣି ।



ପରଦିନ ସକାଳ—

ଦଳେ ମଦୁଆ ନିଦରେ ଶୋଇ ଘଂଘୁଡ଼ୀ ମାରୁଥାନ୍ତି । ସେତେବେଳେ ଠିକ୍ ଏ ମୁହଁ ଅନ୍ଧାରି ହୋଇଥାଏ—ପ୍ରଭାତକାଳୀନ ସୂର୍ଯ୍ୟଙ୍କର ଲୋହିତ ବାଳରଶ୍ମି ଗୁହାରେ ପଡ଼ି ନଥାଏ ।

ରାତରେ ଝିନ ସେଇ କାଠଦୋ ପଛ ପଟେ ଶୋଇଲା—କିନ୍ତୁ ପ୍ରଭାତ ନ ହେବା ପୂର୍ବରୁ ସମସ୍ତଙ୍କ ଆଗରୁ ଉଠିଲା ସେ । ଦେଖିଲା—ସୁଷମା ଓ ସର୍ଦ୍ଦାର ସେଇ ଲୋକଙ୍କ ଭିତରେ ନାହାନ୍ତି ।

ପଦାକୁ ବାହାରିଗଲା । ଝରଣାର ସ୍ୱଚ୍ଛ କାଚଧାର-ଜଳରେ ମୁହଁ ହାତ ଧୋଇ ସିଧା ସିଧା ଚାଲି ଆସିଲା—ବଡ଼ ପାଟିରେ 'ସର୍ଦ୍ଦାର'ର ନାଁ ଧରି ଡାକ ଛାଡ଼ିଲା ।

+ + + +

"ସୁଧୀର କିଏ ସେ ? ତାଙ୍କର ରାମବାବୁଙ୍କଠାରୁ ଖବର ଆସିଛି"—ପଚାରିଲା ସେ ଝିନ ସୁସ୍ପ ସ୍ୱରରେ ।

ସୁଧୀର ଗୁହା ଭିତରୁ ବାହାରି ଆସି ହଠାତ୍ ପଚାରିଲା—"ତୁମେ କିପରି ଏଠିକି ବାଟ ପାଇଲ ?"

"ମୁଁ ଏକା ନୁହେଁ—ଆମେ ପ୍ରାୟ ଦଳେ ଆସିଚୁ । ଘଣ୍ଟାକ ଭିତରେ ମୁଁ ଫେରି ନ ଗଲେ ଏ ସ୍ଥାନ ଘେରାଉ ହବ । ରାମବାବୁ ମତେ ପଠେଇଚନ୍ତି । ସେ ତମକୁ ଟଙ୍କା ଦବା ପାଇଁ ପ୍ରସ୍ତୁତ । କିନ୍ତୁ ସର୍ବପ୍ରଥମେ ତାଙ୍କ କନ୍ୟାକୁ ସେ ଜୀବିତାବସ୍ଥାରେ ଦେଖିବାକୁ ଚାହାଁନ୍ତି । ତାଙ୍କର ଭୟ ହଉଚି ଯେ କାଳେ ତାଙ୍କ ଝିଅ ଉପରେ ଅତ୍ୟାଚାର ହେଇଥିବ । ଏହା ଯଦି ସତ ହୁଏ—ସେ ତମକୁ ଟଙ୍କା ଦେବେ, ଅହୁରି ଝିଅକୁ ବି ବାହା ଦେବେ । ଏଥିରେ ଯଦି ସମ୍ମତ ନ ହୁଅ, ତାହେଲେ ସେ ଯଥାବିଧି ପ୍ରତିକାର କରିବେ । ଯଦି ରାଜି ହୁଅ ତ ଭଲ କଥା । ଏକ୍ଷଣି ସୁଷମାକୁ ମୋ ସଙ୍ଗରେ ପଠାଅ ।"

ଲୋକଟିର ଦୃଢ଼ ପ୍ରତିଜ୍ଞା, ସାହସ, ବଳ ଓ ତା କଥା ଦସ୍ୟୁ-ପତିର ମନରେ ଭୟର ସଞ୍ଚାର କଲା ।—ଝିନ 'ଚୌକିଟିଏ ଟାଣି

ନେଇ ସେଠି ବସି ପଡ଼ିଲି ଆଉ ଝରକାବାଟେ ସାଗରକୁ ଅନାଇ ରହିଲି—ଯେମିତି ଏ କଥାକୁ ମୋଟେ କାନ ନ ଦେଇ।

× × × ×

"କପରି ମୁଁ—" ଦସ୍ୟୁପତି ଏତିକି ଆରମ୍ଭ କରୁଥିଲେ କହିବାକୁ।

"ମୁଁ ଏ ସମ୍ବାଦଟି ଜଣାଇ ଦବା ପାଇଁ ଆସିଥିଲି। ମୁଁ ଓ ସୁଷମା ଯଦି ଫେରିଯାଉଁ ତ ଭଲ। ଆଗରୁ ଏ କଥା କହି ରଖିଲି। ଯଦି ଏହା ନ ହୁଏ, କଣ ହବ ବି କହିଛି"—ସର୍ଦ୍ଦାର କଥାରେ ବାଧା ଦେଇ ବିନ ଅନର୍ଗଳ ବକିବାରେ ଲଗିଲି।

"ତମକୁ କପରି ବିଶ୍ୱାସ କରିବି ?"—କହିବାବେଳେ ନିଜର ପ୍ରତ୍ୟୁତ୍ପନ୍ନମତିତା ହରଉଥାନ୍ତି ସେ।

"ତାହେଲେ ଅପେକ୍ଷା କରିବାରେ ପ୍ରୟୋଜନ ନାହିଁ। ଆପଣ ଦେଖିବେ। ରାମବାବୁ ଯେତେବେଳେ ଜବାବ ଦେଉଥିଲେ, ସେଠା ନିଖୁଣ ସତ। ତୁମେ ଜାଣ ତ ?"

× × × ×

"ସୁଧୀର! ଆଜି ସନ୍ଧ୍ୟାବେଳେ ସୁଷମା କାମ୍ବା ମୁଁ ଟଙ୍କା ନେଇ ଏଠିକି ଆସିବୁ—" ସୁଷମାକୁ ସାଙ୍ଗରେ ନେବାବେଳେ ଏତିକି କହିଦେଇ ଗଲିଗଲି ବିନ କାହାରିକୁ ଭ୍ରୂକ୍ଷେପ ନ କରି।

—୬—

ରାମବାବୁ ଶୁଣିଲେ ସବୁ—ମୂଳରୁ ଅଗ ଯାଏ।

"ଜାଣେ ବିନ, ତମ ବାପାଙ୍କୁ"—କହିଲେ ସେ। "ପିଲାବେଳେ ଏକା ସାଙ୍ଗରେ ପଢ଼ିବା ସମୟରେ ଦୁଇ ବନ୍ଧୁତା ଥିଲା

ଆମ ଧର୍ମଙ୍କର । ତୁମ ଦୁଃଖ କଥା ସବୁ ଶୁଣିଛି—ଆହୁରି ମଧ୍ୟ ଘରଦ୍ୱାର ଓ ଜିନିଷପତ୍ର ସବୁ ମହାଜନଙ୍କ ହାତକୁ ବଢ଼ାଇ ଦେଇ ଯେଉଁ ବୁଦ୍ଧିମାନ ଓ ବିବେଚକର କାର୍ଯ୍ୟ କରିଛ । ଯଦି ତୁମେ ସୁଷମାକୁ ବାଞ୍ଛା କରୁଅ—ଯା ଦେଖିଛ ଓ ଶୁଣିଛ—ସେ ତୁମର ହେବ । ନଚେତ୍ ସେଇ ଦୁରନ୍ତ ନର-ପିଶାଚ ଦସ୍ୟୁଙ୍କ ପାଖକୁ ପୁଣି ଫେରିଯିବ । କିନ୍ତୁ ଯେ କୌଣସି ଉପାୟରେ ଟଙ୍କାଟା ଦିଆଯିବ ।"

× × × ×

ରାତିରେ—ଗମ୍ଭୀର ଅନ୍ଧକାର ରାତିରେ—ପୁଣି ଏକାକୀ ବିନ ସେଇ ଦସ୍ୟୁଙ୍କ ଗୁହାରେ—ପାଞ୍ଚ ହଜାର ଟଙ୍କା ନେଇ, ଯେଉଁ ଟଙ୍କା ସୁଷମାର ଉଦ୍ଧାର ପାଇଁ ଚାହିଁଥିଲେ ସେଇ ଦସ୍ୟୁମାନେ ।

"ଏଇ ନିଅ ତମ ଟଙ୍କା । ସୁଷମା ଆଉ ଆସିବ ନାହିଁ । ମୁଁ ସକାଳେ ଫେରିଯିବି, ନୋହିଲେ ତୁମର ଏ ଗୁହା ଘେରାଉ ହେବ । ରାମବାବୁଙ୍କୁ ବିଶ୍ୱାସ କର । ଆଜି ରାତିକ ପାଇଁ ମୁଁ ତୁମର ଅତିଥି । ତୁମ ଗୁପ୍ତକଥା ସବୁ ମୋ ପାଖରେ, ତାଙ୍କ ପାଖରେ ଓ ସୁଷମା ପାଖରେ ନିରାପଦରେ ଅଛି—କାରଣ ତୁମେ ଆମକୁ ବିଶ୍ୱାସ କରିଛ, ଆଉ ଆମେ ବି ତୁମକୁ ।"

× × × ×

ସୁଧୀର ବିନକୁ ନିଦରୁ ଉଠେଇ ଦେଲା—ଦିନ ହେଇ-ଗଲାଣି ।

"ଯଦି ତୁମେ ଠିକ୍ ସମୟରେ ନ ଯାଅ, ଆମେ ବିପଦରେ ପଡ଼ନ୍ତୁଁ । ଏଇ ପାଞ୍ଚ ହଜାର ଟଙ୍କା ତୁମର ନେଇଯାଅ । ରାମ-ବାବୁଙ୍କଠାରୁ—ଯେ ଆମ କଥା ରଖିଛନ୍ତି—ଯା ନବା ଅନ୍ୟାୟ ।

ଅଣା କରୁଛ, ତୁମେ ଯେପରି ଆମ ପ୍ରତି ବିଶ୍ୱାସଘାତକତା ଆଚରଣ ନ କର ।"— ବିନ ଯ୍ଥାର ଠିକ୍ ଜବାବ ତାଙ୍କୁ ଦେଲା ।

\+ + + +

ପ୍ରକୃତ ବା'ଘର—କି ମଜା । ସେଇ ପାଇଁ ହଜାର ଭିତରୁ ବିନ ମହାଜନମାନଙ୍କ ଟଙ୍କା ପରିଶୋଧ କରି ଦେଇଛି । ସେ ଟଙ୍କା ବିନକୁ ଦିଆହେଲା ଯୌତୁକ ହିସାବରେ ।

"ଚାଲ, ସେଇ ଗୁମ୍ଫା ଆଡ଼ୁ ଟିକିଏ ଆଜି ବୁଲି ଆସିବା—" ବିନ ସୁଷମାକୁ ପଚାରିଲା । ଏହା ଶୁଣି ଭୟରେ ତା ଦେହ ହାତ ଥରିଲା—କିନ୍ତୁ ବିନ ଯେ ତା ସାଙ୍ଗରେ ଅଛି । ଭୟ କଣ୍ଠପାଇଁ ?

"ସୁଧୀର ଭାରି ଭଲ ଲୋକ । ତାର ଦୟାଦ୍ର ହୃଦୟ ପାଇଁ ଆମେ ତାଠାରେ ଋଣୀ । ସେ ପ୍ରକୃତ ମରହଟ୍ଟାର ବ୍ୟବହାର ଆମକୁ ଦେଖାଇଛି ।"

\+ + + +

"ସୁଷମା, ମୋତେ ଭୟ କରନା—"ସେମାନେ ଦସ୍ୟୁମାନଙ୍କଠାରୁ ବିଦାୟ ଦେଇ ଯିବାବେଳେ ସୁଧୀର ନମ୍ର ଭାବରେ କହିଲା । "ନିଜକୁ ନିଜେ ଆଜି ଲଜ୍ଜିତ ମନେ କରୁଛି ତୁମ ସାମନାରେ । ତୁମ ପ୍ରତି ସଞ୍ଚିତ ବହୁଦିନର ସ୍ନେହର ଉପହାର ରୂପେ ମୋର ଏଇ ଅଳ୍ପ ଖଣିଟି—ଯାହା ଗୁହାରେ ଆଜି ପର୍ଯ୍ୟନ୍ତ ଗୁପ୍ତ ଅଛି—ମୋର ଦେଉଛି । ତାଙ୍କୁ ଅନୁରୋଧ, ସେ ମୋ ଦଳର ଲୋକଙ୍କ ସାଙ୍ଗରେ ମିଶି କାମ କରନ୍ତୁ ।"—ତା ପାଟି ଖାଲି ମାରିଗଲା, ଆଉ ସେ କିଛି କହି ପାରିଲାନି ।

ସୁଷମା ପାଟିରୁ ବି ପଦେ କଥା ବାହାରିଲାନି—ଭୟରେ ଘୁଞ୍ଚି ଆସି ସ୍ୱାମୀଙ୍କ କାନ୍ଧ ଉପରେ ନିଜେ ଢଳି ପଡ଼ିଲା ।

# ଯାʼ ମନ ଯେମିତି !

—୧—

ସକାଳେ ଚା ପିଇ ଝେହ୍ଲା ଝେହ୍ଲା ପ୍ରକାଶ ବାହାରକୁ ଆସିଲା । ପାଠକ ପାଖରେ ଛିଡ଼ା ହୋଇଥିବା ଚାକରକୁ ପଚାରିଲା - "ଗୋପୀବାବୁ ଉଠିଲେଣି ?"

"ହଁ ଆଜ୍ଞା ! ବୈଠକଖାନାରେ ବସି ଚା ପିଉଛନ୍ତି ।"

ପ୍ରକାଶ ବୈଠକଖାନାରେ ପ୍ରବେଶ କରି ଦେଖିଲା ଗୋପୀନାଥ ଓ ତା ସାନ ଭଉଣୀ ଶାନ୍ତି ଦୁହେଁ ବସି ଗପସପ ହେଉଛନ୍ତି ।

ଗୋପୀନାଥ ଓ ପ୍ରକାଶ ଉଭୟେ ସମବୟସ୍କ । ଗୋପୀନାଥ ଏବର୍ଷ ଏମ୍, ଏ, ପାସ କରିଛି । ଶାନ୍ତି ମେଟ୍ରିକ କ୍ଲାସରେ ପଢ଼ୁଛି । ତା ଭାଇ ଭଉଣୀ ଅବିବାହିତ ।

ପ୍ରକାଶ କହିଲା—"କି, ଆଜି ଭାରି ସଅଳରେ ତ ପହାଡ଼ଝୋ ଭାଙ୍ଗିଗଲା ।"

ଶାନ୍ତି କହିଲା—"ତେବେ ଆପଣ କଣ ଭାବୁଛନ୍ତି ଯେ ଭାଇ ନିଜ ମନକୁ ଉଠିଛନ୍ତି ?—କେତେ ଡାକରେ ଉଠିଛନ୍ତି ଆଜି ! ଏଥିରେ ପୁଣି ସେ ନାଟକ କରିବାକୁ ଯୋଗାଡ଼ କରୁଛନ୍ତି ।"

ପ୍ରକାଶ ପଚାରିଲା—"ନାଟକ ?"

ଶାନ୍ତ କହିଲା—"ହଁ, କାଲି ଭାଇଙ୍କ ମଥାରେ ନାଟକ କରିବାର ଭୂତ ସବାର ହୋଇଚ । କହୁଥିଲେ—ଆମେ ଏତେ ବନ୍ଧୁ ଏଠି ଅଛୁଁ, ଇଚ୍ଛା କଲେ କୌଣସି ସ୍କୁଲ କିମ୍ବା ବନ୍ଧିତ ଅଞ୍ଚଳକୁ ସାହାଯ୍ୟ କରିବା ପାଇଁ କେବେ କେବେ ନାଟକ କରି ପାରନ୍ତୁ ।"

"କି, ଏ କଣ ସତ ଗୋପି ? ଏ ତ ଖୁବ୍ ଭଲ କଥା । ଆସ, ଆମେ ସମସ୍ତେ ମିଶି ଗୋଟେ 'ଏମେଚର୍ ପାର୍ଟି' ଗଢ଼ିବା ।"

ଏହି ବିଷୟ ଆଲୋଚନା ହଉଁ ହଉଁ ଦଶଟା ବାଜିଗଲା । ପ୍ରକାଶର ସ୍ତ୍ରୀ ଲଳିତା ଗୁଡ଼ଜରକୁ ପଠାଇବାରୁ ଯାଇ ପ୍ରସଙ୍ଗ ବନ୍ଦ ହେଲା ।

ପ୍ରକାଶ ଘରକୁ ଲେଉଟିବାରୁ ଲଳିତା କହିଲା—"ଖୁବ୍ ତ ଚପ ହଉଥିଲ ଆଜି । କେତୁଟା ବାଜିଲଣି ଏଣେ ଖିଆଲ ନାହିଁ ।"

ଭୋଜନ ସମୟରେ କଥା ହଉଁ ହଉଁ ପ୍ରକାଶ କହିଲା—"ଏ ଗୋପୀବାବୁ ହେଉଛନ୍ତି ଭାରି ଭଲ ଲୋକ ।"

"ହଁ ଭାରି ଭଲ ସେମାନେ । ଏଇ କେତୁଟା ଦିନ ଭିତରେ ଶାନ୍ତ ମତେ ତା ନିଜ ଭଉଣୀଠୁଁ ଅଧିକା କରି ନେଇଛନ୍ତି । ତୁମକୁ ଶାନ୍ତ କିମିତିକା ଲାଗେ ?"

"ଭାରି ଭଲ । କି ମିଠା ସ୍ୱର ତାର । ଢେର ପାଠ ପଢ଼ିଚି, ପେର୍ ଗାନ ବାଜଣା ଶିଖିଚି । ତାପରେ ତାକୁ ତ କଥାରେ ହରି ବ୍ରହ୍ମା ସୁଦ୍ଧା ପାରିବେ ନାହିଁ ।"

"ତୁମେ ତ ଢେର ତାରିଫ କରି ଗଲଣି । ହଉ, ସେତିକି ଥାଉ । ଭାତ ଦୁଇଟା କଞ୍ଜିପାଣି ହୋଇଗଲା, ଖାଇ ଦିଅ ।"

"ନା, ଆଉ ଖାଇବ ନାହିଁ, ଲଳିତା। ଭୋକ ଲଗୁନାହିଁ। ଶାନ୍ତ କାଲି ରାତରେ ରସଗୋଲା ବନେଇଥିଲା, ଆଜ ଜବରଦସ୍ତି ଛ-ସାତଟା ଖୋଇ ଦେଲା।"

—୨—

ଲଳିତା ଖଟ ଉପରେ ଶୋଇ ପ୍ରକାଶ କଥା ଭାବୁଥାଏ। ଆଜିକାଲି ମନ ତାଙ୍କର କାହିଁକି ଟିକିଏ ପରିବର୍ତ୍ତନ ହୋଇ ଯାଇଚି। ଯେ ମାରି ପକେଇଲେ ସୁଦ୍ଧା ରାତ ଆଠଟା ପରେ ବାହାରେ କଉଁଠି ରହେ ନାହିଁ, ସେହି ପ୍ରକାଶ ଆଜି ଗୋପୀନାଥଙ୍କ ଘରେ ରାତ ଦଶଟା ଏଗାରଟା ଯାଏ ଗପ ନ କରି ଘରକୁ ଫେରୁ ନାହିଁ। ଆଜି ଲଳିତାର ଦେହ ଭଲ ନାହିଁ, ତେବେ ବି ଏତେ ଡେର! ଗୋଟେ ଗମ୍ଭୀର ଅଭିମାନ ଲଳିତା ହୃଦୟକୁ ଘାରି ପକାଇଲା। ଏଇ ଗୋପୀନାଥଙ୍କ ଘର ସାଙ୍ଗରେ ମାସୁଟେ ଭିତରେ ଏତେ ଘନିଷ୍ଠତା! ତାଙ୍କର ରାତରେ ଏତେ ବେଳଯାଏ ସେଠି ବସି ଗପ କରିବାର ଆବଶ୍ୟକତା କଣ? ଆଉ ସେ କଥା ଏମିତି କଣ ଯେ ଏତେ ବେଳଯାଏ ଛୁଟୁ ନାହିଁ?—ଦେଖୁଚି, ଆଜି-କାଲି ମୋ ପାଖରେ ବସିବାକୁ ତାଙ୍କର ମନ ନାହିଁ। ଦିନ ସାରା ସେଇଠି ସମୟ କଟଉଚନ୍ତି। ତେବେ କଣ ଶାନ୍ତକୁ......! ନାଁ, ନାଁ, ଛି, ମୋ ମନ କେଡ଼େ ଛୋଟ! ସେ ଅସମ୍ଭବ!"

ରାତରେ ଫେରି ପ୍ରକାଶ କହିଲା—"କଣ ଦେହ ଖରାପ ହେଲା, ଲଳିତା? ମୁଁ ସାତଟାବେଳେ ଚାଲି ଆସୁଥିଲି, କିନ୍ତୁ ଗୋପୀ ଓ ଆଉ କେତେ ଜଣ ବନ୍ଧୁ ଆସିବାକୁ ଦେଲେ ନାହିଁ। କଣ, ଇଚ୍ଛୁଣି ବି ମୁଣ୍ଡ ବଥଉଚି? ଅମୃତାଞ୍ଜନ ଆଣି ମଥାରେ ଘଷିବି?......ଲଳିତା, ଆଜକାଲି ତୁମ ଦେହ କାହିଁକି ଠିକ୍ ରହୁ

ନାହିଁ । ଚାଲ, କନ୍ଦୁଦନ ପାଇଁ କୁଆଡ଼େ ଚାଲିଯିବା । ମୁଁ ସ୍ତ୍ରୀ ଚାଲ ନା ? ଘର ଖାଲି ପଡ଼ିଥିବ ।"

"ସେଦିନ ଏତେ ଟଙ୍କା ଦେଇ ଏ ଘରକୁ ଖରିଦ କରିବାର କି ଜରୁରୀ କାମଟା ଥିଲା ବୁଝିନି । ମାସେ ଦି ମାସ ପାଇଁ ଘରଟା ବି ଭଡ଼ା ଲଗେଇନାହିଁ ।"

"ଭଡ଼ା ଲଗାଇବା ପାଇଁ ତ ଏ ଘର ଖରିଦ କରି ନଥିଲି । ତୁମରି ଲାଗି ଖରିଦ କରିଥିଲି, ଲଳିତା ।"

ଏହିପରି କଥା ହଉଁ ହଉଁ ରାତି ବେଶୀ ହୋଇଗଲା । ସନ୍ଧ୍ୟାରେ ପ୍ରକାଶ ଉପରେ ଲଳିତାର ଯେଉଁ ମାନ, ଅଭିମାନ ପୁଞ୍ଜୀଭୂତ ହୋଇଥିଲା, ଏହି ଦି ଦଣ୍ଡର ଆଳାପରେ ତା ମନ ପବିତ୍ର ନିର୍ମଳ ଗଙ୍ଗାଜଳ ପରି ସ୍ୱଚ୍ଛ ହୋଇଗଲା । ବହୁତ ଶାନ୍ତି ଓ ତୃପ୍ତିର ସହିତ ପ୍ରକାଶଙ୍କୁ ଆଲିଙ୍ଗନ କରି ଲଳିତା ଶୋଇଗଲା ।

—୩—

ଶ୍ରାବଣର ସନ୍ଧ୍ୟା । ଲଳିତା ଚୁପ୍ ଚାପ ଖଟ ଉପରେ ଏକା ବସିଛି । ପ୍ରକାଶ ଟିକିଏ ଆଗରୁ ବାହାରକୁ ଯାଇଛି । ଆକାଶ କଳା ବାଦଲରେ ଛାଇ ହୋଇ ଯାଇଛି, ପୃଥିବୀ ବି ରହସ୍ୟମୟ ଅନ୍ଧ- କାରରେ ଘୋଡ଼ାଇ ହୋଇ ପଡ଼ିଛି । ପବନ ଭାରି ଜୋରରେ ପିଟୁଛି । ଏହି ସମୟରେ ଲଳିତା ଆଉ ଚୁପ୍ ଚାପ ହୋଇ ବସି ପାରିଲା ନାହିଁ । "ଯାଏଁ, ଶାନ୍ତ ସାଙ୍ଗରେ ଟିକିଏ ଗପ କରି ଆସେ," କହି ସେ ଛିଡ଼ା ହେଲା ।

ଲଳିତା ଶାନ୍ତ ଘର ଦୁଆର ମୁହଁରେ ଗୋଡ଼ ଦେଇଛି କି ନାହିଁ, ଭିତରୁ ଗୋଟେ ଘରୁ ପ୍ରକାଶର ପାଟି ଶୁଣାଗଲା । ଫେର

ପ୍ରକାଶର କଥା ତା କାନରେ ଆସି ବାଜିଲା—"ମୁଁ ଆଜିଯାଏ ପ୍ରକୃତରେ କାହାରିକୁ ପ୍ରେମ କରିନାହିଁ । ଏତେଦିନ ହେଲା ମୋ ନିଜ ହୃଦୟର ରାଣୀଙ୍କୁ ଖୁବ ଅଡ଼େ ଖୋଜି ବୁଲୁଥିଲି । ଆଜି ତାର ଦେଖା ପାଇଛି—ସେ ତୁମ ଛଡ଼ା କେହି ନୁହେଁ । ବିଶ୍ୱାସ କର, ସେ ତୁମେ !"

ଏତିକି ଶୁଣିବାଯାଏ ଲଳିତାର ହୋଶ ଥିଲା । କିନ୍ତୁ ତା ପରେ ଆଉ ଶୁଣାଗଲା ନାହିଁ । ତା ନିକଟରେ ଦୁନିଆ ଲୁପ୍ତ ହୋଇଗଲା । ଥରି ପଡ଼ୁଁ ପଡ଼ୁଁ ଗ୍ଲାସଟା ତା ହାତରେ ପଡ଼ିଗଲା । ଏ କଣ ! ଏ କଣ ସମ୍ଭବ ! ତା କାନର କଣ କିଛି ଦୋଷ ଅଛି—ନାଁ ତ ।

କୌଣସି ପ୍ରକାରେ ସେ ତା ଘରକୁ ଫେରି ଆସିଲା । ସିଧା ସିଧା ତା ଶୋଇବା ଘରକୁ ଯାଇ ଲୁଗା ନ ପାଲଟି ବିଛଣାରେ ପଡ଼ିଗଲା । ଆଜି ତା ନିକଟରେ ସାରା ଜଗତଟା ଲୁପ୍ତ ହୋଇ ଯାଇଛି । ତା କାନ ପାଖରେ ସ୍ୱାମୀଙ୍କର ସେହି କଥା ଗୁଡ଼ିକ ବାରମ୍ବାର ପ୍ରତିଧ୍ୱନିତ ହବାକୁ ଲାଗିଲା । ଅସହ୍ୟ କଷ୍ଟ ଓ ବେଦନାରେ ତା ହୃଦୟ ଭରିଗଲା । ସେ ଦିନ ତା ମନ ଭିତରେ ପ୍ରକାଶ ସମ୍ବନ୍ଧରେ ସନ୍ଦେହର ଯେଉଁ ଛାୟାଟି ଜାଗି ଉଠିଥିଲା, ସେଥିପାଇଁ ସେ ବାରମ୍ବାର ନିଜକୁ ଧିକ୍କାରି ଥିଲା । ଆଉ ତାକୁ 'ମିଛ' ବୋଲି କହି ମନ ଭିତରୁ ତଡ଼ି ଦେଇଥିଲା । ଏକ୍ଷଣି ଗୋଟି ଗୋଟି କରି ସେହି କଥାଗୁଡ଼ିକ ମନରେ ପଡ଼ିଲା—ଶାନ୍ତି ମାସେ ଦେଢ଼ମାସ ହେଲା ଅସିଛି, ଏତିକି ଦିନ ମଧ୍ୟରେ କି ଘନିଷ୍ଠତା ହୋଇଗଲା, ପ୍ରକାଶଙ୍କୁ ତାଙ୍କ ଘରେ ରାତି ଦଶ ଏଗାରଟା ଯାଏ ସମୟ କଟାଇବାକୁ ଭଲ ଲାଗିଲା, ପ୍ରକାଶ ପରି ଯୁଅନର ଶାନ୍ତିଙ୍କୁ ପ୍ରଶଂସା ଆଉ ବା କେତେ ଦିନର ଛୋଟ ବଡ଼ କଥା ଓ ଘଟଣା ଅନେକ । ଆଉ ଆଜି—ଆଜି

ତା ନିଜ କାନରେ ଶୁଣିଛି ଯେ ପ୍ରକାଶ ଶାନ୍ତିକୁ ପ୍ରେମ କରେ ବୋଲି କହୁଥିଲା, "ତୁମେ ମୋ ହୃଦୟର ରାଣୀ।"

ସେତେବେଳେ ବାହାରେ ପ୍ରବଳ ବର୍ଷା ହେଉଛି। ଝଡ଼ ଓ ତୋଫାନରେ ପୃଥିବୀ କମ୍ପି ଯାଉଛି। ତାର ମନେ ପଡ଼ିଲା, ଦିନେ ପ୍ରକାଶ ତାକୁ କହୁଥିଲା—"ତୁମକୁ ନ ପାଇଲେ ମରିଯିବି, ଲଳିତା। ତୁମ ବାପାଙ୍କଠୁ ତୁମକୁ ମାଗି ନେବି। କୁହ, ତୁମର ଏଥିରେ କିଛି ଆପତ୍ତି ନାହିଁ?"

ବିଜୁଳି ଚମକିବା ସାଙ୍ଗେ ସାଙ୍ଗେ, ଘଡ଼ ଘଡ଼ ହୋଇ ଘଡ଼-ଘଡ଼ି ମାଇଲା। ସଙ୍ଗେ ସଙ୍ଗେ କଳା ଆକାଶର ବଦନ ଚିରି ବିଜୁଳିର ଏକ ଚମକ-ରେଖା ଲଳିତାକୁ ଥଟ୍ଟା କରି କହିଗଲା—"ଅରେ, ସବୁ ମିଛ। ସବୁ ମିଛ। ସେ କେବଳ ତାର ମୋହ ଥିଲା। ଆଖିର କୁହାଣୀର ଭଙ୍ଗୀ ଥିଲା। ପ୍ରଥମେ ଦେଖି ତାକୁ ଭାରି ଭଲ ଲାଗିଥିଲା। କିନ୍ତୁ ଏହି ଦଶ ବର୍ଷ ଭିତରେ ତାର ସବୁ ସଉକ ମେଣ୍ଟିଗଲା। ଏଇଥିପାଇଁ ସେ ଆଜି ଏତେବେଳଯାଏ ଏକ ନୂତନ ଯୁବତୀ ପାଖରେ ମନ ଢାଳି ଦେଉଛି।"—ଏହା ସମ୍ଭବ ଯେ ଶାନ୍ତି ତାଠୁ ଢେର ସୁନ୍ଦର, ତାଠୁ ବେଶୀ ପଢ଼ିଛି, କିନ୍ତୁ—। ଘୃଣା, ଲଜ୍ଜ୍ୟା ଓ ଅପମାନରେ ତା ମୁହଁ ମଉଳି ଗଲା। ଏକ୍ଷଣି କଣ କରିବାକୁ ହେବ, ସେ କଣ କରିବ, କିଛି ସ୍ଥିର କରି ପାରିଲା ନାହିଁ। "ସେ ଯେ ମୋର ଜୀବନ। ସେ ଯେ ମୋର ପତି। ସେ ଯେ ମୋର ସ୍ୱର୍ଗ। ସେ ଯେ ମୋର ସର୍ବସ୍ୱ।"—କହି ଉଠିଲା। ଆଖିରୁ ଲୁହ ଧାର ଶ୍ରାବଣର ମେଘଧାର ପରି ଅନବରତ ବହି ଚାଲିଛି। ଆଉ ବାହାରେ ବଜ୍ର, ପ୍ରକାଶ କଥାର ପ୍ରତିଧ୍ୱନି କରି କହି ଉଠୁଛି—"ତୁମେ ମୋ ହୃଦୟର ରାଣୀ।"

ଲଳିତାର ହୃଦୟ ହାହାକାର ହୋଇ ଉଠିଲା । ଦୀର୍ଘ ତିନି ବର୍ଷ ତଳେ ପ୍ରକାଶ ମୁହଁରୁ 'ତୁମକୁ ପ୍ରେମ କରୁଛି' ଶୁଣି ସେ ପ୍ରକାଶକୁ ତା ଦେହ ମନ ସବୁ ସମର୍ପଣ କରି ଦେଇଥିଲା । କିନ୍ତୁ ସେଥିରେ ପ୍ରକାଶ ମୋହ ଥିଲା—ଅଧିକ ମାଦକତା ଥିଲା ଗୁହାରେ ଥିଲା । ତାପରେ ବି ଏହି ଦୀର୍ଘ ଦିନ ଯାକ ଏତେ ପ୍ରେମ ଓ ଆଦର ? ଏ ସବୁ ଅଭିନୟ—ସବୁ ଖାଲି ଅଭିନୟ !

—୪—

ହୃଦୟରେ ଏକ ଅସୀମ ବେଦନାର ବୋଝ ନେଇ ନିଦରୁ ଉଠିଲାବେଳେ ସାମନାରେ ପ୍ରକାଶଙ୍କୁ ଦେଖି ଲଳିତାର ଦେହ ଜଳିଗଲା, କିନ୍ତୁ ପରକ୍ଷଣରେ ସେ ସଂଯମ-ରଜ୍ଜୁରେ ତାକୁ ବାନ୍ଧି ପକାଇଲା ।

"କାଲି ରାତିରେ ତୁମ ଦେହ ଭାରି ଗରମ ଥିଲା, ଆଜି କିପରି ଅଛି ?"—ଏହା କହି ପ୍ରକାଶ ଲଳିତା ମଥା ଉପରେ ହାତ ରଖିଲା ।

ଯେଉଁ ହାତର ସ୍ପର୍ଶରେ ଲଳିତାର କପୋଳ ଦିନେ ଗୋଲାପୀ ହୋଇ ଉଠୁଥିଲା, ଆଜି ସେହି ହାତର ସ୍ପର୍ଶରେ ତା ମନ ଘୃଣା ଓ ବିରକ୍ତିରେ ଭରିଗଲା ।

"ଏପରି ଜର ଠିକ୍ ଏ କମ ଅଛି । ତୁମେ ଶୋଇପଡ଼, ମୁଁ ଯାଉଛି ଡାକ୍ତରଙ୍କୁ ସାଙ୍ଗରେ ନେଇ ଆସିବି"—କହି ପ୍ରକାଶ ସାଇକେଲ ଧରି ବାହାରି ପଡ଼ିଲା ।

ଲଳିତାର ଦେହେରୁ ଉତ୍ତାପରେ ଦୁଇଟି ବେଦନା ଭରା ନିଶ୍ୱାସ ଛୁଟିଲା ।

ସେ ଦିନ ରବିବାର । ଦି ପହରେ ଗୋପୀନାଥ ଓ ଅନ୍ୟ କେତେ ଜଣ ଆସିଲେ ପ୍ରକାଶଙ୍କୁ ଡାକି । ପ୍ରକାଶ କହିଲା—"ଆଜି ପାଇଁ ମତେ କ୍ଷମା କର । ଆଜି ମୁଁ ଯାଇ ପାରିବି ନାହିଁ । ଲଳିତାର ଦେହ ଭଲ ନାହିଁ ।"

"ଅଚ୍ଛା" କହି ଗୋପୀନାଥ ଘର ଭିତରକୁ ଯାଇ ଲଳିତାକୁ ପଚାରିଲା, "ନୂଆବୋଉ, ତମ ଦେହ କଣ ଅଧିକ ଖରାପ ?"

"ନାଁ, ନାଁ, ସେମିତି କିଛି ବିଶେଷ ନୁହେଁ ।"

"ତାହେଲେ ଟିକିଏ ହୁକୁମ ମିଳୁ, ପ୍ରକାଶ ଭାଇଙ୍କି ଘଣ୍ଟେ ଦି ଘଣ୍ଟା ପାଇଁ ନେଇଯିବୁ ।"

"ହଁ, ଜରୁର ।"

ପ୍ରକାଶକୁ ସମସ୍ତେ ଜବରଦସ୍ତି ଟାଣି ନେଇ ଚାଲିଗଲେ । ଲଳିତା ଠିଆ ହୋଇ ଚାହିଁ ରହିଲା । କଣ କରିବାକୁ ହବ ? ସ୍ୱାମୀ ତାର ଅଜଣା ଅଚିହ୍ନା ଯୁବତୀ ସାଙ୍ଗରେ ପ୍ରେମ କରିବ, ଆଉ ତା ପାଖରେ ମୋର ଲାଞ୍ଛନା ଓ ଅଭିନୟ କରିବ—ଏ ଅପମାନ ଓ ଲାଞ୍ଛନା ଅସହ୍ୟ । ନାରୀର ଅଭିମାନରେ ଲଳିତାର ହୃଦୟ-ବହ୍ନି ଜଳି ଉଠିଲା । ନାଁ, ନାଁ, ନୂହର୍ଣ୍ଣ ଅପେକ୍ଷା କରି ରହିବା ଅସହ୍ୟ । ତାହେଲେ ସେ କଉଠିକି ଯିବ ? ମା ପାଖକୁ ? ଏ ଦୁଃଖମୟ ଜୀବନ ନେଇ ସେଠାକୁ ଯିବାରେ ଫଳ କଣ ?"

ଅନେକ ବେଳଯାଏ ଲଳିତା ଭାବିଲା । କ୍ରମେ କ୍ରମେ ତା ଚେହେରା ଦୃଢ଼ ଓ କଠୋର ହୋଇ ଉଠିଲା । ଚାକରକୁ ଗୋଟେ ଆଠଣି ଦେଇ କହିଲା—"ଯା, ଆଠଣାର ଅଫିମ କିଣି ଆଣ ଯା । ଧାଇଁକରି ଦେଇ ଯା । ମୋ ଦାନ୍ତମୂଳ ଭାରି ଦରଜ କରୁଛି । ଶୁଣିଛି ଅଫିମ ଲଗେଇଲେ ଦରଜ ଛାଡ଼ିଯିବ ।"

ଚିକଏ ପରେ ସୁକଚି ଟେବୁଲ ଉପରେ ଅଫିମ ରଖି ଦେଇ ଗ୍ଲଲଗଲା ।

ତାପରେ ଲଳିତା ଟେବୁଲ ସାମନାରେ ଚୌକିଟା ଉପରେ ବସି ଗୋଟେ କାଗଜରେ ଲେଖିଲା—

"ମୁଁ କୌଣସି ଗୁପ୍ତ କାରଣ ହେତୁ ଅତ୍ମହତ୍ୟା କରୁଛି । ଏଥିପାଇଁ କେହି ଦାୟୀ ନୁହଁନ୍ତି । —ଲଳିତା ।"

ତାପରେ କିଛିକ୍ଷଣ ଚିନ୍ତାମଗ୍ନ ରହି ଅଉ ଖଣ୍ଡେ କାଗଜରେ ସ୍ୱାମୀଙ୍କ ଉଦ୍ଦେଶ୍ୟରେ ଲେଖିଲା—

"ତୁମେ ହଠାତ୍ କେତେ ଓ ସ୍ତମ୍ଭିତ ହୋଇଯିବ କାହିଁକି ଏତେ ଶୀଘ୍ର ମୁଁ ଜାଣି ପାରିଲି । ପ୍ରଥମେ ପ୍ରଥମେ ମୋ ମନରେ ସନ୍ଦେହର ଉଦ୍ରେକ ହେଲା । କିନ୍ତୁ ସେହି ସନ୍ଦେହକୁ ମିଥ୍ୟା ବୋଲି କହି ମୁଁ ନିଜକୁ ଧିକାର କଲି, ଭର୍ତ୍ସନା କଲି । କାହିଁକି ନା ଏ ଅଢ଼େଇ ବର୍ଷ କାଳ ତୁମେ ମୋତେ ସୁନ୍ଦର ଅଭିନୟ ହିଁ କଲ । କାଲି ସନ୍ଧ୍ୟାରେ ଯେତେବେଳେ ନିଜ କାନରେ ଶୁଣିଲି ଯେ ତୁମେ ଶାନ୍ତିକୁ କହୁଛ—ଅଜଣାଏ ତୁମେ କାହାରିକୁ ପ୍ରେମ କରିନାହଁ ଓ ଶାନ୍ତି ତୁମ ହୃଦୟର ରାଣୀ—ସେତେବେଳେ ମୋର ଭ୍ରମ ତୁଟିଲା । କହି ପାରିବ କି, ମିଥ୍ୟା ମୋହ ଓ ଅଳୀକ ମାଦକତାଦ୍ୱାରା ଗ୍ରାମ୍ୟାଣୀରେ ଜଣେ ନିଃସ୍ୱାର୍ଥ ସରଳା ସ୍ତ୍ରୀର ଜୀବନକୁ ବ୍ୟର୍ଥ କରି ଦବାର ଅବଶ୍ୟକତା ତୁମର କଣ ଥିଲା ? ପତି ଦେବତା—ଯଦି କୁହ ନା, ମତେ କଣ ପ୍ରକୃତରେ ପ୍ରେମ କରୁ ନ ଥିଲ, ଭଲ ପାଉ ନ ଥିଲ ହୃଦୟ ଦେଇ ? ନା, ଅଉ ଡେରି କରିବ ନାହିଁ । ଶୀଘ୍ର ଏ ଲଳିତା ଜୀବନ ସମାପ୍ତ କରିଦେବ—କାହିଁକି ନା, ତୁମ ମୁହଁ ଦେଖିଲେ ପ୍ରକୃତରେ ମରିବାକୁ ଇଚ୍ଛା ହୁଏ ନାହିଁ । ମୁଁ ଉଦ୍ଦାନ

ପାଇଁ ବିଦାୟ ନେଇ ଯାଉଛି । ତୁମେ ଏକ୍ଷଣି ନିଜର 'ହୃଦୟର ରାଣୀ'କୁ ନେଇ ସୁଖରେ ଜୀବନ-ତରୀ ବାହି ନିଅ । ଅପମାନିତ, ଲାଞ୍ଛିତ ଓ ଅବହେଳିତ ଜୀବନ ଧରି ରହିବା ସଂସାରରେ ମୋ ପକ୍ଷରେ ଅସହ୍ୟ ଓ ଦୁର୍ବିସହ ହୋଇ ଉଠିଲାରୁ, ଆଜି ନିଜ ହାତରେ ଭଗବାନଙ୍କୁ ସାକ୍ଷୀ ରଖି ନିଜର ଶେଷ କରି ଦେଇ ଯାଉଛି ।"

ଲଳିତା—

ଏହି ସମୟରେ ଆଉ କୋଠାରୁ ଶାନ୍ତ ଗୀତ ଉଠିଲା—
"ମିଳନ ଲାଗି ଅଧୀର ମୋ ହୃଦୟ ଗୋ......।"

ଏଁ । ପ୍ରକାଶ ଉଦ୍ଦେଶ୍ୟରେ ଏ ଗୀତରୂପୀ ମାୟା ଛଳନା ! ଘୃଣାରେ ଲଳିତାର ମୁଖ ବିକୃତ ହୋଇଗଲା । ତାପରେ ଉଠି ଛିଡ଼ା ହେଲା, ପୁଣି, ଅଫିମକୁ ଥରେ ଶୁଙ୍ଘିଲା । ହୃଦୟର ଅଗ୍ନି ଅଙ୍ଗୁଷ୍ଠ ତେଜରେ ଦାଉ ଦାଉ ହୋଇ ନାଚି ଉଠିଲା । ଫେର୍ ଘରର ଚାରି-ଆଡ଼କୁ ଥରେ ଆଖି ବୁଲାଇ ଦେଖିଲା—ଏହି ବାରଣ୍ଡାରେ ବସି ପ୍ରକାଶ ସାଙ୍ଗରେ କଥା ହଉଁ ହଉଁ ସେ କେତେ ଅନିଦ୍ରା ରଜନୀ ବିତେଇ ଦେଇଛି, କେତେ ସୁଖ ସ୍ୱପ୍ନ ଦେଖିଛି । ଯେତେ-ବେଳେ ଘରେ ଦିନେ ଛୋଟ ନୂଆ ଅତିଥିଟିଏ ଆସି ଉଭା ହେବ, ସେ କଣ କରିବ ଯେତେବେଳେ, ତାକୁ କିପରି ପାଳନ କରିବ—ଭବିଷ୍ୟର ଏହି ଚିନ୍ତା କରି କରି ସେ କେତେ ସ୍ୱପ୍ନର ଜାଲ ନ ବୁଣିଛି ! କିନ୍ତୁ ଦ ଠା ବର୍ଷ ବି ଗଲାନାହିଁ । ସେ ଜାଲ୍ ଠିକ ଠିକ ହୋଇ ନିର୍ଦ୍ଦୟତାର ସ୍ପର୍ଶରେ ଛିଣ୍ଡିଗଲା । ସବୁ ଇଚ୍ଛା ତାର ଅପୂର୍ଣ୍ଣ ରହିଲା । ତାକୁ କୋଡ଼ିଏ ବର୍ଷ ବୟସ ବେଳେ ସବୁ ଶେଷ ହୋଇ-ଗଲା, ସବୁ ଶେଷ ହୋଇଗଲା । ଲଳିତା ଏ କଥା ଭାବି ଖଟ ଉପରେ ମୁହଁଟା ଗୁଞ୍ଜି କାନ୍ଦିବାକୁ ଲାଗିଲା । ଖୋଲା ଝରକାବାଟେ ମେଘ ଟୋପା ଟୋପା ଆସି ତା ଦେହରେ ପଡ଼ିବାକୁ ଲାଗିଲା ।

କଥା କହିବ ବୋଲି ଥାଆନ୍ତି, କିନ୍ତୁ ଅନେକ କାଳ କଟୁଁ କଟୁଁ ସେ କଥା ତୁମକୁ କହି ପାରି ନାହିଁ । ବିଶ୍ୱାସ କର ଲଳିତା, ମୁଁ ତୁମ୍ଭକୁ ସାନ ଭଉଣୀଟି ପରି ସ୍ନେହ କରେଁ ।"

ଲଳିତା ଏହା ଶୁଣିବା କ୍ଷଣି ତା ମୁହଁ ଲଜ୍ଜାରେ ନାଲି ପଡ଼ି-ଲେ । ଦୁଇ ହାତରେ ଲଳିତା ତା ଗଳାକୁ ଭିଡ଼ି ଧରିଲା । ଆହା ! ତାହେଲେ ସବୁ ମିଥ୍ୟା—ସବୁ ଅସତ୍ୟ ! ମୋ ସ୍ୱାମୀଙ୍କ ମୋହ ! କି ଶାନ୍ତି ! କି ଗଭୀର ତୃପ୍ତି ! ସେ ଲଜ୍ଜାରେ ପ୍ରକାଶ କୋଳରେ ମୁହଁଟି ଲୁଚାଇଲା ।

"ଲଳିତା, ଉଠ !"

"ମୋ ମନ କେତେ ଛୋଟ ! କି ଭୀଷଣ ଧାରଣା ମନରେ ପୋଷଣ କରି ନେଇଥିଲି ! ତୁମକୁ ମୁଁ କେତେ ଅନ୍ୟାୟ ସନ୍ଦେହ କରିଛି । ମତେ କଣ କ୍ଷମା ଦେବ ନାହିଁ ? ନିଜ ମୁହଁ ତୁମକୁ ଦେଖାଇବାକୁ ମତେ ଲାଜ ମାଡ଼ୁଛି ।"

"ତୁମେ ଭାରି ଦୁଷ୍ଟ । ମୋର ଆସିବା ଠିକ୍ ଏ ବେଳ ହୋଇ-ଥିଲେ, ଆଜି କି ଅନର୍ଥ ଘଟି ନ ଥାନ୍ତା ? ଏତେ ଶୀଘ୍ର ନ ଭାବି ନ ଚିନ୍ତି କୌଣସି କାମ କରିବା ଉଚିତ ନୁହେଁ ।'

ଖୋଲା ଝରକା ବାଟେ ଜହ୍ନ କିରଣ ଆସି ପଲଙ୍କ ଉପରେ ବିଛେଇ ହୋଇ ପଡ଼ିଥାଏ । ଆଜି ତା' ଆଗରେ ଲଳିତା ଓ ପ୍ରକାଶ ଦୁହେଁ ଦୁହିଁଙ୍କ ଗାଢ଼ ଆଲିଙ୍ଗନରେ ଆବଦ୍ଧ ହୋଇ ଉଭୟେ ଅନ୍ତର ହୃଦୟର ସ୍ପନ୍ଦନ ଅନୁଭବ କରିବାକୁ ଲାଗିଲେ ।

+ + + +

ନାଟକ ଅଭିନୟ ଦିନ ପ୍ରକାଶ ନାୟକ 'ବିନୟ' ବେଶରେ ଷ୍ଟେଜରେ ଅବତୀର୍ଣ୍ଣ ହୋଇ ନାୟିକା 'ସୁଷମା' ସହିତ ପ୍ରେମ-ଅଭିନୟ କରୁଁ କରୁଁ କହିଲା—"ତୁମେ ମୋ ହୃଦୟର ରାଣୀ।" ଏତିକିରେ ଲର୍ଣ୍ଣ ତାର ସେଦିନ ସନ୍ଧ୍ୟାର କଥା ମନେ ପଡ଼ିଗଲା। ତା ଚେହେରାରେ ଅସ୍ୱାଭାବିକ ଅସ୍ୱାଭାବିକ ପରିବର୍ତ୍ତନ ପରିଲକ୍ଷିତ ହେଲା, ତା ହୃଦୟ କମ୍ପି ଉଠିଲା, ଆଖିରୁ ଝରି ଝରି କରି ଲୁହ ଗଡ଼ି ପଡ଼ିଲା—ତାକୁ ସାରା ଦୁନିଆ ଅନ୍ଧାର ମାଲୁମ ହେଲା।

(ବିଚିତ୍ର)

## ନୂଆବଉ !

"ବାବୁ !"

"କଣ ବେ ?"

"ଶକ୍ତ ବେରାମ !"

"ବେରାମ ହେଲେ, ମୁଁ କଣ କରିବି ?"

"ବାବୁ, ଗୋଟେ ପଇସା !"

× × × ×

"ଯାଃ, ଯାଃ, ଦୂର୍, ଦୂର୍, ପଳା ଏଠୁ । ଏଁ, ପଇସା ଦେବେ ଆଜ୍ଞା । କା' ବାଡ଼ରେ ଯେମିତି କୋଢ଼ୀ ହାଣୁଥିଲା ! ଯା' ବାପ ଅଜା ଯିମିତି ଏଠି କମେଇକି ରଖିଚନ୍ତି, ଧାଇଁ ଆସିଚ ଏଠିକି ! ଭାଗ୍, ଭାଗ ଏଠୁଁ !"

× × × ×

"ବାବୁ ! ଟିକିଏ ସାହାଯ୍ୟ କରନ୍ତୁ । ସାନ ଭାଇଟି ମୋର ଭାରି ବେମାର୍ । ତିନି ଦିନ ହେଲା ତା' ପେଟକୁ ଦାନା ଯାଇ ନାହିଁ । ଅହରହ ତା'ରି ଲାଗି ଘୁରିଅଡ଼େ ଘୁରି ବୁଲୁଚି । ଖାଇ ନାହିଁ, କାକର ନାହିଁ, ଶୀତ ନାହିଁ, ବର୍ଷା ନାହିଁ, ଅନବରତ ବୁଲି ବୁଲି ମୋ ଦେହ ବିଗିଡ଼ି ଗଲାଣି । ଟିକିଏ ଦୟା କରନ୍ତୁ ! ଏ ଗରିବର ଡାକ ଶୁଣନ୍ତୁ ! ଭଗବାନ ଆପଣଙ୍କର ମଙ୍ଗଳ କରିବେ !"

"ବେ ମର୍ଦନା ! କୁଆଡ଼େ ଗଲ୍ ? ଦେଖ୍ ତ ଟିକିଏ ଯାଇ ତା ମୁହଁଟି କେଡ଼େ ସୁନ୍ଦର ! ପଚ୍ଛନ୍ତି ତ ତାକୁ ଯୁ୍ା ବଦଳରେ ସେ କଣ ଦବ ? ଜଣାଯାଉଚ — ସେ ଭାରି ଲାଜକୁଳୀ !"

"ହିଁ — ହିଁ — ହିଁ, ଅମ ସାଅନ୍ତେ ତୋ ଉପରେ ଭାରି ଖୁସି ହେଇଚନ୍ତି । ତାଙ୍କ ଧଲ୍‌ଟାକୁ ଅଗ ଖୁସି କରିଦେଲେ ତ ପୁଲେ ପାଇଯିବୁ ବଲେ ବଲେ ।"

"ସାଅନ୍ତେ କଣ କହୁଚନ୍ତି ?"

"ଏଁ — କଣ କହୁଚନ୍ତି, ତୁ ବୁଝି ପାରୁନୁନା ? ସାଅନ୍ତେ — ତୁ — ତୁ — ତତେ ଚାହୁଁଚନ୍ତି ।"

"ମତେ ଚାହୁଁଚନ୍ତି ? କଅଣ ଲାଗି ? କାହିଁକି ? କଉଁଥିପାଇଁ ?"

"ଅରେ ତୁ ତ ଅମ ସାଅନ୍ତଙ୍କର ମନଲାଖି — ହବୁ ! ତୁ ଯେ ଭାରି ସୁନ୍ଦରୀ ! ତୁ କଣ ବଲ୍‌କୁଲ୍ ବୁଝି ପାରୁନୁ ? ତୋର ସେ ବଡ଼ ବଡ଼ କଲା ଭଅଁର ପରି ଅଖି, ଲାଲ ଲାଲ ଗୋଲାପୀ ଓଠ, କଇଁଫୁଲ ପରି ଧୋବ ଫରଫର ଦାନ୍ତ, ତା'ପରେ ଗୋରା ତକ ତକ ଦେହ......... । ଅକୁ କଣ ସହଜରେ କିଏ ଛାଡ଼େ ?"

\+ \+ \+ \+

"ଡାକ୍ତରବାବୁ ! ଅମ ଗରିବଙ୍କ ପ୍ରତି ଟିକିଏ ଦୟା କରନ୍ତୁ । ଯଉଁଠି ଶହ ଶହ ରୋଗୀଙ୍କ ଫିସ୍ ନେଇ ଦେଖୁଚନ୍ତି, ସେଠି କଉଁଠି ଗୋଟେ ଅଧେ ବାଦ ଯିବ । ଯତଟା ହବ କଅଣ ? ଯା'ର ବାପ ମା କେହି ନାହାନ୍ତି, ତାକୁ ବିନା ପଇସାରେ ଟିକିଏ ଇଲାଜ ଦେବେ

ନାହିଁ ? ଈଶ୍ୱର କରନ୍ତୁ, ଆପଣଙ୍କର ଖୁବ୍ ବଢ଼ନ୍ତି ହଉ – ଯାର ଗ୍ଲୁରି ଗୁଣ ଉନ୍ନତ ହଉ !"

"ଦନ୍ ଯଦ ଏଇମିତ ରୋଗୀଙ୍କି ମାରେଣା ଇଲାଜ ଦଏଁ ଓ ତାଙ୍କରି ଗାଣ୍ଡି ଏ ଗାଣ୍ଡି ଏ ଲାଟେଁ, ଖାଇବ କଣ ? ତେଣେ ପିଲା ଛୁଆ ମୋର ସମସ୍ତେ ମରନ୍ତୁ । ଏହିପରି ତ ଶହ ଶହ ରୋଗୀ ନିତ ଆସୁଚନ୍ତି ।"

"ଡାକ୍ତରବାବୁ, ଟିକିଏ ଦୟା କରନ୍ତୁ ! ନହେଲେ ଭାଇଟି ମୋର ମରିଯିବ ।"

"ହୁଁ – ତୋ ଘରେ ଆଉ କେହି ନାହିଁ ତତେ ସାହାଯ୍ୟ କରିବାକୁ ?"

"ହିଁ, ବଡ଼ ଭାଇ ଅଛନ୍ତି । କିନ୍ତୁ ସେ ଏଷଣି ଜେଲ୍‌ରେ । ତାଙ୍କୁ ଗୋଟେ 'ଡାକ୍ତର' ଗ୍ଲୋର ବୋଲି କହି ଜେଲ୍ ଦେଇଛି ।" "

"ତୋ ନାଁ ?"

"ସର !'

"ତୋ ଭାଇ ନାଁ ?"

"ଗୋବିନ୍ଦ ।"

"ଗୋବିନ୍ଦ !—କଣ କାମ କରୁଥିଲା ?"

"ପିଅନ୍ ଗ୍ଲୁକରି !"

"ହୁଁ—ତତେ ଭଳି ମୁଠେ କେହି ଦଉ ନାହାନ୍ତି ?"

"ନାଁ, ଦଉନାହାନ୍ତି ବାବୁ !"

"ବଡ଼ ଆଶ୍ଚର୍ଯ୍ୟ କଥା ! ଏ ଅଜବ ଦୁନିଆରେ ହର କିସମର ଶଳ ଅଛି । ଚଳ ଦେଖିନ ଦର ଦାମ୍, କା'ର ବେଶୀ ତ କା'ର

ଇମ୍ । ଯା, ତୋର ଏ ରୂପପସରାକୁ ନେଇ ବଜାରକୁ ଯା । ସେଇ ଅନୁପାତରେ ତୋର ଦାମ୍ ବି ପାଇଯିବୁ । ତତେ କଣ ଏ ବୁଦ୍ଧି ଆଗରୁ ଦେଖା ଯାଉ ନ ଥିଲା ?"

\+ + + +

"ସତେ ! ଏ ଅଜବ ବିଶାଳ ଦୁନିଆଁଟାରେ ଟିକିଏ ଠାରୁ ନିକିଏ ଯାଏ, ସବୁର ମୂଲ୍ୟ ଅଛି । କଣ ? ନିଜକୁ ମୁଁ ସଂସାରରେ ବିକି ଦେବି ? ନହେଲେ ତ ଫେର ଭାଇଟିର ଅବସ୍ଥା କଣ ହେବ ? ନାଁ ଡେରି କରିବା ଭଲ ନୁହେଁ । ଏକ୍ଷଣି ଯାଉଚି । ବାବୁ, ପ୍ରାଣର ଭାଇଟି ମୋର ! ଆଜି ତତେ ଏ ସର୍ବଗ୍ରାସୀ କାଳରୂପୀ ମୃତ୍ୟୁ-ମୁଖରୁ ଟାଣି ଆଣିବାକୁ, ମୁଁ ଏ ସଂସାରରେ ନିଜକୁ ଅନ୍ୟଠାରେ ବିକି ହେବା ପାଇଁ ଯାଉଚି । ଆଜିଠାରୁ ତୋ ସାଙ୍ଗରେ ମୋର କିଛି ସଂପର୍କ ନାହିଁ । ସବୁ ନିଜ ହାତରେ ଛିଣ୍ଡାଇ ଦେଲି । ଖାଲି ଏତିକି ମୋର ଜୀବନର ଆକାଙ୍କ୍ଷା—ଭଗବାନ ତତେ ବଞ୍ଚାଇ ରଖନ୍ତୁ ।"

\+ + + +

କିଛିଦିନ ପରେ—ସରର ଭାଇଟି ଭଲ ହୋଇଗଲାଣି !

"ଜଲ୍‌ଦି ଟିକିଏ ବାହାରନ୍ତୁ ଡାକ୍ତର ବାବୁ !"

"ହଁ—ହଁ—ଯାଉଚି ଚାଲ୍ !"

\+ + + +

"ନୂଆବଉ ! ନୂଆବଉ !"

"ଡାକ୍ତରବାବୁ ! ନୂଆବଉର କଣ ହୋଇଗଲା !"

"ନୂଆବଉ ! ନୂଆବଉ !"

"ଡାକ୍ତରବାବୁ ! ଏଇ ଟଙ୍କା ନିଅନ୍ତୁ । କିଛି ଟିକିଏ ଭଲ ଇଲାଜ ଦିଅନ୍ତୁ । ନୂଆବଉର ମୁହଁ ଖୋଲି ଟିକିଏ ଦେଖନ୍ତୁ ତ ତାର କଣ ହୋଇଛି । ଅପା ତ ମତେ ଛାଡ଼ି ପର ଘରକୁ ଚାଲିଗଲା । ଅଛି ବର୍ତ୍ତମାନ ମୋର ଏକମାତ୍ର ସମ୍ବଳ ଓ ସହାୟ ଏତିକି—ଏଇ ନୂଆବଉ । ଆକୁ ଟିକିଏ ଭଲ ଇଲାଜ ଦେଇ ଭଲ ଭଲ କରି ଦିଅନ୍ତୁ ! ଆପଣଙ୍କ ଗୋଡ଼ ତଳେ ପଡ଼ୁଛି । ଟଙ୍କାକୁ ପରବାୟ କରିବେ ନାହିଁ । ଏ ଘର ଦୁଆର, ମୋର ଯାହା କିଛି ଅଛି, ସବୁ ବିକି ତା ପିଛେ ଖର୍ଚ୍ଚ କରିବି । ସେ ଯେମିତି ଭଲ ହୋଇଯାଉ । ସମୟ ପଡ଼ିଲେ ମୋ ନିଜ ଜୀବନ ଦବାକୁ ବି ପ୍ରସ୍ତୁତ । ସେ ମତେ ଛାଡ଼ି ଚାଲିଗଲେ, ଏ ସଂସାର ସେ ମତେ ଅନ୍ଧାର ମାଲୁମ ହବ— ଦଣ୍ଡେ ବି ବଞ୍ଚି ରହି ପାରିବି ନାହିଁ । ସେ ମୋର ଜୀବନ, ସେ ମୋର ସବୁ । ତାକୁ ଭଲ କରି ଦିଅନ୍ତୁ !"

"ନୂଆବଉ ! ନୂଆବଉ ! ଏଁ, ଏ କଣ ? ଦିହ ଯେ କଅଁା-ପାଣି ! ନାଡି ଚାଲୁନାହିଁ । କାହିଁକି, ନାକବାଟେ ତ ନିଶ୍ୱାସ ଆସୁନାହିଁ ? ହାୟ ଭଗବାନ ! ଶେଷରେ କଣ ମୋ ଭାଗ୍ୟରେ ଏୟା ଲେଖିଥିଲ ? ଯା କପାଳରେ ଦୁଃଖର ଗାର ଟଣା ହୋଇଛି, ତାକୁ ଶତ ଚେଷ୍ଟା କଲେ ବି ନିଭେଇ ପାରିବ ନାହିଁ । ସେ ଶର ଜୀବନ୍ତ ଓ ସାକ୍ଷୀ । ଆଜି ଏ ଦୁନିଆରେ ମୋର ବା କିଏ ଲୋଡ଼ା କଣ ? କା ମୁହଁ ଚାହିଁ ଏଠି ପଡ଼ି ରହିବି ? ନୂଆବଉ ! ତମ ପଛେ ପଛେ ମୁଁ ବି ଚାଲିଲି !"

—ତା'ପରେ ସବୁ ଶେଷ !!

# ଭାତ ମୁଠେ

ଦେବେନ୍ଦ୍ର ଯେତେବେଳେ ସ୍କୁଲ୍ ଛାଡ଼ି କଲେଜରେ ଆସି ଦାଖଲ ହେଲା, ତାକୁ ମାଲୁମ ହେଲା ସେ ଯେମିତି ଗୋଟେ ନୂଆ ଅଜବ ଦୁନିଆରେ ଆସି ହାଜର ହୋଇଛି— ଏଠିଁ ମାଷ୍ଟରଙ୍କ ବେତର ଭୟ ନାହିଁ କି ହେଡ଼ ମାଷ୍ଟରଙ୍କର ଚାଣକ୍ୟ ସଦୃଶ ରକ୍ତବର୍ଣ୍ଣ ଚକ୍ଷୁ ନାହିଁ—କାହାରିକି ଡର ଭୟ ନାହିଁ, ବେପରୱା ଏଠିକି। ଜୀବନ ସ୍ୱର୍ଗରେ ପରୀ-ରାଇଜ ପରି ପ୍ରତୀୟମାନ ହେଲା। ଚାରିଆଡ଼େ ସୁଖର ହାୱା ଓ ଆନନ୍ଦର ଢେଉ! କି ମଉଜ! ଦେବେନ୍ଦ୍ରକୁ 'କଲେଜ-ଜୀବନ' ଖୁବ୍ ପସନ୍ଦ ହେଲା। ସେ ନିଜକୁ କଲେଜ-ଛାତ୍ରଠାରୁ କଉଁ ଗୁଣରେ ହେଲେ କମ୍‌ରେ ରଖିଲା ନାହିଁ। ଯଉଁ ଦେବେନ୍ଦ୍ର ଖାଲି ଗୋଟେ କାମିଜ ଓ ଧୋତିରେ ଦିନ କାଟୁଥିଲା, ଆଜି ତାକୁ ଦି ଦିନରେ ବି ଗୋଟେ ସୁଟ୍ ପିନ୍ଧିବାକୁ ଭଲ ଲାଗିଲାନି। ଯଉଁ ଦେବେନ୍ଦ୍ର ଆଜିଯାଏ ହଳେ ମାମୁଲି ଚପଲରେ ଦିନ କଟାଇ ଆସୁଥିଲା, ଆଜି ସେ ମଚ ମଚ ହଉଥିବା 'ଶୁ' ମାଡ଼ି ଖୁବ୍ ଫୁର୍ତ୍ତିରେ ବାଟ ଚାଲିଲା। ତାକୁ ମାଲୁମ୍ ନ ଥାଏ ଦେଶରେ କଣ ହଉଚି, ସମାଜ ଓ ଜାତିର ଆଜି କି ଦଶା ହେଲାଣି ଏବଂ ଲୋକମାନଙ୍କର କି ଦୁର୍ଦ୍ଦଶା ଘଟିଲାଣି। ତାର ସଂସାର ଥିଲା ବସାଟି, ତାକୁ ନିତି ଝାଡ଼ଝୁଡ଼ ପରିଷ୍କାର କରେ—ଘରଟିକୁ ନିତି ସଜାଇବା ଥିଲା ତାର ନିତ୍ୟକର୍ମ। ସେ ଦିନେ ହେଲେ ଭାବି ନଥିଲା— କଲେଜ-ଜୀବନ କ୍ଷଣଭଙ୍ଗୁର; ତାର ସୁନାର ସଂସାରର, ଯଉଁଥିରେ

ଭୁଲ ଭବିଷ୍ୟତରେ ବି ଭ୍ରମ ରହିଛି ଦିନେ ଉଜୁଡ଼ିଯିବ ; ଯଉଁ କଳ୍ପନା ଜଗତରେ ବିଚରଣ କରୁଛି ତାକୁ ନୀରସ ଓ ଉଦ୍ୟାନଙ୍କ ପ୍ରତୀତ ହବ ; ଯଉଁ ସୁଖ-ସ୍ୱପ୍ନର ଅନୁଭବ-ସ୍ପର୍ଶ ଲାଭ କରି ସେ ଆଜି ଆନନ୍ଦରେ ବିଭୋର ହୋଇ ଉଠିଛି, ନିଷ୍ଠୁରତାର ବେଦୀ ଉପରେ ସେ ଦିନେ ଠିକ ଠିକ ହୋଇ ଚୂରମାର ହୋଇଯିବ ; ଯଉଁ ଭବିଷ୍ୟ-ଆଶା ପଛରେ ଆଖି ବୁଜି ଧାଇଁ ଚାଲି ଯାଉଛି, ସେ କଷ୍ଟ କଣ ସତେ ମେଣ୍ଟିବ ! 'ଏ ସବୁ' ସେ କେବେଁ ଭାବି ନଥିଲା ।

ବର୍ଷର ଗତି ଅନୁସାରେ ଦେବେନ୍ଦ୍ର ମଧ୍ୟ ଆଗକୁ ଯାଉଥାଏ ।

ଆଜି ସେ ଏମ୍, ଏ, କ୍ଲାସରେ । ପରୀକ୍ଷା ପାଖେଇ ଆସି-ଲାଣି, ସେଇଥିଲାଗି ରାତି ଦିନ କିଛି ନ ମାନି ସବୁବେଳେ ପଢ଼ାରେ ଲାଗିଥାଏ ।

ଦିନକର କଥା । ଦେବେନ୍ଦ୍ର ତା ପଢାଘରେ ବସି ପଢ଼ୁ-ଥାଏ । ତା ମା ଧୀରେ ଧୀରେ ଭିତରକୁ ଆସି ଖୁବ୍ ଖୁସିରେ କହିଲା—"ଅରେ, ଏତେବେଳ ଯାଏ ଖାଇବାକୁ ଯାଉନୁ କାହିଁକି ? ରାତି ତ ଡେରି ହେଲାଣି !"

"ହଁ, ଅଉ ଟିକିଏ ପରେ ଯିବି"—ଉତ୍ତର ଦେଲା ଦେବେନ୍ଦ୍ର ।

"ଅରେ, ରାଧା ମାଙ୍କୁ କି ଜବାବ ଦେବୁ ?"—କଥାରେ ବାଧା ଦେଇ ଦେବେନ୍ଦ୍ରର ମା କହିଲା ।

ମାଙ୍କର ଏହି ପ୍ରଶ୍ନ ଦେବେନ୍ଦ୍ରକୁ ଚିନ୍ତାରେ ବିବ୍ରତ କରି ପକାଇଲା । ସେ ଭାବିବାକୁ ଲାଗିଲା—କେଉଁ ଦିନରୁ ଏ କଥା ଗଡେଇ ଆସୁଛି, ଅଉ ଅଧିକ ଗଡ଼େଇବା ଉଚିତ ନୁହେଁ । ଆଉ ଜମା ଦି ମାସର ତ କଥା, ଫେର୍ ତ······ଫେର୍ ତ ଟଙ୍କା, ଟଙ୍କାର ଦରକାର । କେବଳ ପାସ୍ଟାର ଡେରି ଅଛି । ତାପରେ

ରାଧାର ସୁନ୍ଦର କମନୀୟ ରୂପ-ଛବି ବି ତା ଦୃଷ୍ଟି-ସାମନାରେ ଜ୍ୱଳନ୍ତ ଓ ଜୀବନ୍ତ ହୋଇ ଜାଣିବାକୁ ଲାଗିଲା । ପରକ୍ଷଣରେ ସବୁ ଭୁଲିଗଲା । ତାକୁ ମାଲୁମ ହେଲା—ରାଧା ଯେମିତି ତାକୁ ଏହି ପ୍ରଶ୍ନ ସ୍ୱୀକାର କରିବାକୁ ପ୍ରାର୍ଥନା କରୁଛି । ରାଧାର ସୌନ୍ଦର୍ଯ୍ୟକୁ "ନୁହେଁ"ରେ ଅପମାନ କରିବାକୁ ଚାହୁଁ ନାହିଁ । ବିବାହ କରିବା ତ କୌଣସି ପାପ ନୁହେଁ, ସମସ୍ତେ କରୁଛନ୍ତି । ଜୀବନର ଉଷାକାଳ ପାଇଁ ତ ଏଇଟା ଗୋଟିଏ ଈଶ୍ୱରୀୟ ବରଦାନ । ତାକୁ ଉପେକ୍ଷା କରିବାରେ ଜୀବନ ଅନ୍ଧକାରମୟ ହୋଇ ଉଠିବ । ଜୀବନରେ ଆପଣାର ସଙ୍ଗୀ ଧରି କିଏ ଆଗକୁ ଯିବାକୁ ନ ଚାହେଁ ? ଫେର୍ ରାଧା ଯେମିତି ସଙ୍ଗିନୀ ! ନାଁ, ନାଁ, ମୁ ଏଥର "ନାହିଁ" କରି ପାରିବି ନାହିଁ । ରାଧାକୁ ମୋର ଓ ମୋତେ ରାଧାର ଜୀବନରେ ଆସିବାକୁ ପଡ଼ିବ ।

"ମା,—" ଦେବେନ୍ଦ୍ର କହିଲା ଆଉ ତାଙ୍କ ଆଗରେ କିଛି କହି ପାରିଲା ନାହିଁ—କେବଳ ମୁହଁକୁ ତଳକୁ ପୋତି ବସି ରହିଲା ।

ତାଙ୍କ ମାଙ୍କ ମୁଖମଣ୍ଡଳରେ ଲୁପ୍ତ-ହସର ଲହରୀ ଖେଳିଗଲା, ଅତି ଖୁସିରେ କହିଲା—"ମୁ ଜାଣେ, ତୁ ଏଥର ମତେ ନିରାଶ କରିବୁ ନାହିଁ । ଏଥିପାଇଁ ତ କାଲି ରାଧାର ମାକୁ କହି ଆସିଛି ଟଙ୍କାର ଯୋଗାଡ଼ କର, ଚାରି ହଜାରରୁ କଉଡ଼ି କଉଡ଼ି କମ୍ ହେଲେ ନେବି ନାହିଁ । ଏଥିରେ ଚିକିଏ ନାକୁ ମିଛ ନାହିଁ । ଏମ୍. ଏ. ତ ପଢ଼ୁଛୁ । ଆଉ ଛଅଟା ମାସ ବାଦେ, ଦୁଇଟି ଚାକିରୀଟି ପାଇଯିବୁ । ସେତେବେଳେ ରାଧା କଣ ରାଣୀଠାରୁ କମ୍ ରହିବ ? ସେ କଥା ଭାବିଲେ, ଚାରି ହଜାର କଣ ବେଶୀ ହୋଇ ଗଲା ?"

ଦେବେନ୍ଦ୍ର କିଛି ନ କହି କେବଳ ହସି ଦେଲା ।

"କଥା ଠିକ୍ ହୋଇ ଗଲାତ ?"—ମା ପଚାରିଲେ ।

"ତୁ ଜାଣୁ ! ମୋର୍ ତ କିଛି କରିବାର ନାହିଁ ।"—ଦେବେନ୍ଦ୍ର ଉତ୍ତର ଦେଲା ।

× × × ×

ବାହାଘର ହୋଇଗଲା । ଦେବେନ୍ଦ୍ରର ମନ ମୁତାବକ ଦାମ୍ ବି ମିଳିଗଲା । ରାଧା ଓ ଧନ ଦୁହିଁଙ୍କର ବଳିଦାନ କେବଳ ଦେବେନ୍ଦ୍ରର ଭବିଷ୍ୟ ଆଶା ଉପରେ ପ୍ରତିଷ୍ଠିତ କରା ଯାଇଥିଲା ।

ଆଜକୁ ଦେବେନ୍ଦ୍ରର ଏମ. ଏ. ପାସ କରିବାର ଚାରି ମାସ ହୋଇଗଲାଣି, କିନ୍ତୁ ଚାକିରି ଖଣ୍ଡିଏ ମିଳିଲା ନାହିଁ । ତାର ଆଶା ଥିଲା—ପାସ୍ ବାଦେ କଉଁଠୁ ନା କଉଁଠୁ 'ଅଫର' ଆସିବ, ଏଇଥି ଲାଗି ସେ କୁଆଡ଼କୁ ଦରଖାସ୍ତ କରି ନ ଥିଲା । କିନ୍ତୁ ତାର ସୁଖ-ସୌଧର ସ୍ୱପ୍ନ ଭାଙ୍ଗି ଚୁର୍‌ମାର୍ ହୋଇ ସଡ଼କର ଧୂଳିରେ ମିଶି ମାଟି ହୋଇଗଲା । ସଂସାର ତାର ଡିଗ୍ରୀକୁ ପରବାୟ କଲା ନି, କି ସମୟ ବି ତାର ଚାକିରିକୁ ପ୍ରତୀକ୍ଷା କଲା ନି ।

ଦେଖୁଁ ଦେଖୁଁ ଆସି ଆଖି ସାମନାରେ ସମସ୍ତ ପାଣି ପଡ଼ି ଗଡ଼ିଗଲା—ଏଇ ବରଷେ କଟିଗଲା । ତେବେ ବି ତାର ବାହାଘର ନିଶା ଛାଡ଼ିଲା ନାହିଁ—ସେଇ ଠିକାରେ ଫୁଙ୍କି କରୁଥାଏ । ମା ତାର ପ୍ରତିଦିନ ପୁଅର ଚାକିରି ଖଣ୍ଡେ ମିଳିବ ବୋଲି ଦିଅଁଙ୍କ ପାଖରେ କେତେ ମାନସି କରୁ ଥାଆନ୍ତି—ସନ୍ଧ୍ୟାବେଳେ ଓ ସକାଳେ ଠାକୁର ବାଡ଼ିକୁ ଯାଇ ରାଧାଗୋବିନ୍ଦଙ୍କ ପାଖରେ ମୁଣ୍ଡ କୋଡ଼ି କାତର କଣ୍ଠରେ ଜଣାନ୍ତି—"ଠାକୁରେ, ଏ ଗରିବର ଗୁହାରି ଥରେ ହେଲେ ଶୁଣିଲ ନାହିଁ ! ଏଇମିତ କେତେ ଦିନ

ପଢ଼ିଥିବ ? ଏତେ ଟଙ୍କା ଖର୍ଚ୍ଚ କରି ପୁଅକୁ ମୋର ପଢ଼େଇଥିଲି ଘରେ ବସିବା ପାଇଁ ନା ? ବସି ଖାଇଲେ ତ ନଣ୍ଟବାଲି ସରେ । କଉଁଠୁ ଅଣିବ ଯେ ତାଙ୍କୁ ଦେବ ? ହେ ଭଗବାନ୍, ପୁଅକୁ ମୋର କେଉଁଠି କୁଳ କନାରୁ ଲଗେଇ ଦିଅ । ତମ ପାଖରେ ଖିରି ଖେଚୁଡ଼ି କରିବି, ଭୋଗ କରିବି । ଚୂପାର ମୁକୁଟ ଓ ପାଟ ଶାଢ଼ୀ ଆଣି ଦେବି । ଏ ଗରିବ କଥା ଭଲା ଟିକିଏ କାନକୁ ନିଅ ।”— ଏହା କହି ଠାକୁରଙ୍କ ପାଖରେ ମୁଣ୍ଡ ବାଡ଼ାନ୍ତି ।

ଧୀରେ ଧୀରେ ଦେବେନ୍ଦ୍ର ବି ତାର ଅବସ୍ଥା ବୁଝି ପାରିଲା । ଘରଅରି କୁର୍ସୀ ଓ ମେଜ ପରିବର୍ତ୍ତେ ତାକୁ ଚଟେଇ ଉପରେ ସମୟ କଟାଇବାକୁ ପଡ଼ିଲା । ନ୍ଥକସି କରିବା ପରିବର୍ତ୍ତେ ତାକୁ ଦିନ ଭରି ଖଟିବାକୁ ପଡ଼ିଲା । ବିଜୁଳି ଅଲୁଅର ସ୍ଥାନ ଲଣ୍ଠନ ଦଖଲ କଲା । ଘଡ଼ି ଘଡ଼ି ପୋଷାକ ପରିବର୍ତ୍ତନ କୁଆଡ଼େ ଯାଇ ଏକ୍ଷଣି କମିଜ ଓ ଧୋତିରେ ଦିନ କାଟିବାକୁ ହେଲା । ଦେବନ୍ଦ୍ରର ସଂସାର ବଦଳି ଗଲା । ଦୁଃଖ ଓ ଚିନ୍ତାର ରେଖା ତାର ସୁନ୍ଦର କାନ୍ତିଯୁକ୍ତ ମୁଖ ମଣ୍ଡଳ ଉପରେ ଘର ତୋଳିଦେଲା ।

ତାର ବିମର୍ଷ ଓ ବିଷର୍ଣ୍ଣ ଚେହେରା, ଅପରିପାଟୀ ଅବିନ୍ୟସ୍ତ କେଶ ଓ ମଇଳା ଛିଣ୍ଡା ପୋଷାକ ଦେଖି ମା’ର ହୃଦୟ କାନ୍ଦି ଉଠୁଥାଏ ଏବଂ ରାଧାର ହୃଦୟ କଉଁ ଅଜ୍ଞାତ ଅଶଙ୍କାରେ କମ୍ପି ଯାଉଥାଏ । ଆଉ ଦେବେନ୍ଦ୍ର ! ସେ ମାଟିର କଣ୍ଢେଇଟି ପରି ବଡ଼ି ସକାଳୁ ଉଠି ଘରୁ ବାହାରିଯାଏ ଯେ **“No Vacancy”**ର କଠୋର ଶବ୍ଦର ଅଘାତ ହୃଦୟରେ ସହି ସହି ସନ୍ଧ୍ୟା ବେଳକୁ ଘରକୁ ଲେଉଟି ଅସେ । କଉଁଦିନ ଖାଇବାକୁ ପେଟକୁ ଦିଟା ଦାନା ବି ଜୁଟେନା । ଆଉ କଉଁଦିନ **“Get Out”** ସାଙ୍ଗରେ

ଚପଗ୍ରସ୍ତର ତଡ଼ା ମୃଣ୍ଡ ପାତ ସହିବାକୁ ପଡୁଛି । ଏ ତାର ଲଲାଟଲିଖନ ।

+ + + +

ଦିନେ ବହୁତ ଘୂରି ଘୂରି ଅନେକ କାକୁତି କରି, ଶେଷରେ ଗୋଟିଏ ମିଲ୍‌ରେ କୋଡ଼ିଏ ଟଙ୍କାର କରାଣୀ ଚାକିରୀ ଖଣ୍ଡେ ମିଳିଲା । ଚାକିରୀ ନ ମିଳିବା ଆଗରୁ ଭାବୁଥିଲା ସେଥିରେ ଖୁବ୍ ଅଛି । ଦଶଟାରେ ଅଫିସକୁ ଯାଇ ଚେୟାରରେ ବସି ଦି ଘଣ୍ଟାର ଧାଡ଼ି ଏଣୁ ତେଣୁ ଲେଖି ଦେଇ ପାଞ୍ଚଟା ବେଳକୁ ତ ଚାଲିଆସିବ—ଜାଣିଥିଲା ଆଗରୁ । କିନ୍ତୁ ଆଜି ବୁଝିଲା ଚାକିରୀର କି କଷ୍ଟ ! ଏଇଥିପାଇଁ ତ—ଏଇ କୋଡ଼ିଏଟି ଟଙ୍କା ପାଇଁ ସେ ତାର ଜୀବନର ସାର ଜିନିଷ ସ୍ୱାଧୀନତାଟିକୁ ଜାଣୁ ଜାଣୁ ତାର ହାତକୁ ବଢ଼େଇଦେଲା । କାହିଁକି ?—ପେଟ ପାଇଁ ତ ! ତାକୁ କଣ ଆଉ କିଛି ମିଳିଲା ନାହିଁ ? କି ? କାହାରି ମୂଲ ଲାଗି ଦିନକୁ ତିନି ଅଣା ମୂଲ ଆଣି ସାଗ ପେଜ, ଯେତେବେଳେ ଯାହା ମିଳିଲା, ଦିଟା ଖାଇଦେଇ ସୁଖରେ ରହିବାକୁ ପିତା ଲାଗିଲା ?—ସେ ତ ଅଳ୍ପରୁ ଉପରେ ଉପରେ ବଢ଼ି ଆସିଛି—ଏ ବା ତାକୁ ଶୋଭା ଲାଗିବ କିମିତି ? ଯେ କଲେଜର ବିଜୁଳି ପଙ୍ଖା ତଳେ ବସି ପ୍ରଫେସରଙ୍କ ଲେକଚର ଶୁଣୁଥିଲା, ତା ପକ୍ଷରେ ଏଠି ସନ୍ଧ୍ୟା ଯାଏ କଲମ-ଘସି ଟାଣିବା କି କଠିନ, କି ଦୁର୍ବହ, କି କଷ୍ଟ ! ଆଜି ଅନୁଭବ କରି ପାରୁଛି ତାର ଅବସ୍ଥା । ବିବଶତାରେ ବଶୀଭୂତ ହୋଇ ମନୁଷ୍ୟକୁ ସବୁ ସହିବାକୁ ପଡ଼େ । ଦୁଃଖ ସୁଖ ମାନ ଅପମାନ ଓ ଘୃଣା—ସବୁର ଛାପ ହୃଦୟ ଉପରେ ପଡ଼ିଯାଏ । ଦେବେନ୍ଦ୍ର ଗୋଟିଏ ମେସିନ ପରି ଦିନ ଭରି କାମ କରି କରି, ସନ୍ଧ୍ୟାକୁ ଆସି ହାତ

ଗୋଡ଼ ଧୋଇ ଲମ୍ବ ଖମ୍ବ ହୋଇ ପଡ଼ିଯାଏ ସାରା ଦିବସର କ୍ଳାନ୍ତି ଓ କଷ୍ଟ ଅପନୋଦନ କରିବା ପାଇଁ ।

\+ + + +

ଏଇମିତି ଦିନ ପରେ ଦିନ, ହପ୍ତା ପରେ ହପ୍ତା ଓ ମାସ ପରେ ମାସ କଟିବାକୁ ଲାଗିଲା । ଏକ୍ଷଣି ଦେବେନ୍ଦ୍ର ନ ଜାଣି ରହି ପାରିଲା ନାହିଁ ଯେ ସେ ଏକ ପୁତ୍ରର ଜନ୍ମଦାତା ପିତା । ଏହି ସମାଗ୍ଭରରେ ଜଣିକାଏ ହେଲେ ସରସତା ତା ଜୀବନରେ ମିଳିଲା ନାହିଁ—ସେ କିଛି ଶୁଣି ନାହିଁ ।

ଦେବେନ୍ଦ୍ର ନିତି ଅଫିସକୁ ଯାଏ । ଦିନେ ସେ ଅଫିସକୁ ଆସିବାର ଠିକ୍ ଏ ପରେ ମିଲର ମାଲିକ ଆସି ବସିଲେ ।

"ଏବେଣି ମିଲର କାମ ତେର ମାଦା ପଡ଼ିଗଲାଣି । ସେଥିପାଇଁ ମୁଁ ତୁମର ଆବଶ୍ୟକତା ମନେ କରୁନାହିଁ ।"—ମାଲିକ ଦିନା ବାକ୍ୟ ବ୍ୟୟରେ କହି ଯିବାକୁ ଲାଗିଲେ ।

ଦେବେନ୍ଦ୍ର ଭାବି ପାରିଲାନି ଯ୍ହାର ଉତ୍ତର କଣ ଦିବ—ତାର ହୃଦୟ କମ୍ପି ଉଠିଲା ।

"ତୁମେ କାମ ଖୁବ୍ ଭଲ କରୁଥିଲ, କିନ୍ତୁ ନୂଆ ଯୋଗୁଁ ତମକୁ କାଢ଼ି ଦେଲି । ଦରକାର ପଡ଼ିଲେ ଫେର୍ ତୁମକୁ ଡାକିବି । ଅଉ ହଁ, ପହିଲାରେ ଆସି ତୁମ ଟଙ୍କା ନେଇଯିବ ।"—କହୁଁ କହୁଁ ମିଲର ମାଲିକ ବାହାରିଗଲେ ।

ସନ୍ଧ୍ୟାରେ ଯେତେବେଳେ ଦେବେନ୍ଦ୍ର ଘରେ ପହଞ୍ଚେ ଓ ତା ମା ତାକୁ ଦାଣ୍ଡରେ ଭେଟିଲେ । ଦିହେଁ ଜଣେ ଅନ୍ୟ ସାଥିରେ ମିଳନ ପାଇଁ ବ୍ୟାକୁଳ ଥାଆନ୍ତି । ଦିହେଁ ଅପଣା ଅପଣା ମନ ଭିତରେ ଏକ ନୂଆ କଥା ଛପାଇ ରଖି ଥାଆନ୍ତି ।

"ପୁଅ ! ଗ୍ରଧାର ଗୋଟେ ଝିଅ ହୋଇଛି !"—ମା କହିଲା ।

"ମା ! ଆଜ ମିଲ୍‌ର ମାଲିକ୍ ମତେ ଚାକିରୀରୁ ବାହାର କରିଦେଲେ !"—ଦେବେନ୍ଦ୍ର ଏକ ଥଣ୍ଡା ଶ୍ବାସ ସାଥିରେ କହି ଉଠିଲା ।

କଳା ରାତି ତା କଜଳକଳା ଅବରଣ ଧୀରେ ଧୀରେ ସମସ୍ତିଙ୍କ ଉପରେ ଢାଙ୍କି ଦେଲା । ସେହି ଅନ୍ଧକାର ମଧ୍ୟରେ ଦେବେନ୍ଦ୍ର ଦେଖି ପାରିଲା—ମା'ଙ୍କ ଆଖିରୁ ଅଶ୍ରୁର ଶ୍ରାବଣ ଧାର ଝରି ପଡ଼ୁଛି । ଆଉ ମା ଦେଖିଲେ—ଦେବେନ୍ଦ୍ର ଛୋଟ ପିଲାଟି ପରି ଅବୋଧ ଓ ନିଷ୍ପନ୍ଦ ଭାବରେ ସେଠି କାଠ ରକମ ଠିଆ ହୋଇଛି !

\+ \+ \+ \+

ଧନ ଅଭାବରୁ ଗ୍ରଧାର ସେବା ଓ ପଥ୍ୟ ଠିକ୍ ଭାବରେ ଯୋଗା ହୋଇ ପାରିଲାନି । ଏଇ କାରଣରୁ ସେ ବେମାର ପଡ଼ିଲା । ସେଇ, ଅବୋଧ ସରଳା ନିରନ୍ଧ୍ରା ବାଳିକାଟି ବି ମାଙ୍କ ପାଇଁ ସଦା ସର୍ବଦା ବ୍ୟାକୁଳ । ଦେବେନ୍ଦ୍ର ଫେର୍ ଚାକିରୀ ପାଇଁ ଘୂରି-ଅଟଡ଼ି ବାୟା ପାଗଳାଙ୍କ ଭଳି ଘୂରି ବୁଲିଲା—କିନ୍ତୁ ସବୁ ନିଷ୍ଫଳ, ବୃଥା । ଧନୀଯାଙ୍କ ଘରୁ ଘରୁ ଯେଉଁଠୁ କେଉଁଠି ନ ମିଳେ, ରାତି ଅଧରେ ଘରକୁ ଫେରେ ନିରାଶର ବୋଝ ହୃଦୟରେ ନେଇ—ଏଇଥିପାଇଁ ଆଜ ତାର ସଂସାର ଅମାନିଶା ପରି ଅନ୍ଧକାରମୟ । ସୁଖ ତା ପକ୍ଷରେ ସ୍ବପ୍ନ ! ଆନନ୍ଦ ଓ ହର୍ଷ ତା ଭାଗ୍ୟରେ ଲେଖା ନାହିଁ । ଝିଙ୍କା ତାର ଭାଗ୍ୟଠାରୁ ବହୁ ଦୂରରେ—କଲେଜର ସେ ବିଳାସ-ବ୍ୟସନାସକ୍ତ ସୁଖମୟ ଜୀବନ ଆଜ ତାକୁ ସ୍ବପ୍ନବତ୍ ପ୍ରତୀତ ହେଲା । କେହି ତାର ଆଜ ଆପଣାର ନାହିଁ । ଯେ ଆପଣାର ଥିଲେ,

'ସେମାନେ ଅର୍ଥବିନା ଆଜି ତାର ସାତ ପରଠୁଁ ବଳି ହୋଇ ଯାଉ-ଚନ୍ତି । ମା'ଙ୍କର ସ୍ନେହମୟ ଡାକ, ରାଧାର ସେବା ଓ ବାଳିକାର ସୁନ୍ଦର ରୂପଶ୍ରୀ, ଏହି ତନୋଟି ଯୋଗୁଁ ସେ ଅସରନ୍ତି ଅକଳନା ଦୁଃଖରେ ବି ଆଜି ସୁଖର ସ୍ପର୍ଶ ଅନୁଭବ କରି ପାରୁଥିଲା ।

+ + + +

ରାଧାର ବେମାରି ପଡ଼ିବା ଯା ଭିତରେ ଚାରି ମାସରୁ ଅଧିକ ହୋଇ ଗଲଣି । ବିଛଣାରେ ପଡ଼ି ପଡ଼ି ସେ କ୍ଷୀଣା ଓ ଜୀର୍ଣ୍ଣଶୀର୍ଣ୍ଣା । ଆଉ ଉଠି ବସି ପାରିବାର ଶକ୍ତି ନାହିଁ । ଏହି ସମୟରେ ମା ବୁଢ଼ୀ ବି ସମସ୍ତଙ୍କୁ କଷ୍ଟର ଦରିଆ ମଝିକୁ ନିକ୍ଷେପ କରି ଦେଇ ଦିନେ ଅମର ଧାମକୁ ଚାଲିଗଲେ । ଦେବେନ୍ଦ୍ରର ଜୀବନ ଅଧିକ ନୀରସ ହୋଇ ଉଠିଲା ।

+ + + +

ସହରରେ ଦୁର୍ଗାପୂଜାର ଧୂମ ଚାଲିଥାଏ । ରୋଜ ସନ୍ଧ୍ୟା-ବେଳକୁ ଯାତ୍ରା ହୁଏ । ଦୋକାନରେ ସ୍ଥାନ ପୂରିଯାଏ । ପିମ୍ପୁଡ଼ି ମଦା ପରି ଲୋକମାନେ ଛୁଟି ଆସନ୍ତି । କେଉଁ ସୁଦୂର ମଫସଲରୁ ଯେ ସେମାନେ ଆସନ୍ତି ତାର ଇୟତ୍ତା ନାହିଁ । ପିଲାଏ ମା ବାପଙ୍କଠୁ ଅଳି କରି ପଇସା ନେଇ କଣ୍ଢେଇ ପେଁକାଳି ଓ ମିଠେଇ କିଣି ମହା ଖୁସିରେ ଘରକୁ ଫେରନ୍ତି । ଦେବେନ୍ଦ୍ରର ଘର ଠିକ୍ ସଡ଼କ ପାଖରେ । ସେ ଦେଖୁଥାଏ—ଲୋକମାନେ ଯେଝା ଯେଝାର ଛୁଆ ପିଲାଙ୍କୁ ସାଙ୍ଗରେ ନେଇ ଚାଲି ଯାଉଛନ୍ତି—କେହି ତ ତାକୁ ହେଲେ ଟିକିଏ ପଚାରୁ ନାହାନ୍ତି ଯେ ତୁ କାହିଁକି ଆଜି ଆନନ୍ଦ ଓ ମହୋତ୍ସବର ଦିନରେ ଏଇଠି ଇମିତି ଛିଡ଼ା ହୋଇଛୁ ?—ଧନ୍ୟରେ ଭଗବାନ !—ଧନ୍ୟ ତୋର ସଂସାର ! ତା ଚକ୍ଷୁ ସାମନାରେ ଦୁଇଟି ନିରୀହ ପ୍ରାଣୀଙ୍କର ଜୀବନ ମରଣ ସମସ୍ୟା !

× × × ×

ଆଜି ଦଶହରା । ଗ୍ରାମଆଡ଼େ ଚହଲ ଚହଲ । କି ବଡ଼ କି ସାନ ସମସ୍ତେ ଆଜି ଆନନ୍ଦରେ ବିଭୋର, କିନ୍ତୁ ଦେବେନ୍ଦ୍ରର ମୁଖରେ ଆଜି ହର୍ଷର ରେଖାଟିଏ ବି ନାହିଁ । ରାଧାକୁ କାଲି ରାତିରୁ ଆହୁରି ବେଶୀ ଜର—ଆଜି ସେ ବେହୋସ୍ । ବାଳିକାଟି ଏକା ପଡ଼ି ରହିଥାଏ । ଦେବେନ୍ଦ୍ର ଏ କ୍ରୂର ବ୍ୟଥା ଓ ଅସହ୍ୟ ବେଦନା ସହି ପାରିଲା ନାହିଁ । ଦୌଡ଼ିଲା ହରି ବୈଦ୍ୟଙ୍କ ପାଖକୁ । ସେ ବର୍ତ୍ତମାନ ଦୁସରା—ବଡ଼ଲୋକ । ବନ୍ଧୁମାନେ ଢେର ବସି-ଥାଆନ୍ତି, ସେ ବସି ଭାରି ଖୁସି ଗପ କରୁଥାଆନ୍ତି । ଦେବେନ୍ଦ୍ର ବହୁତ କାକୁତି ମିନତି କରି ଡାକିଲା, କିନ୍ତୁ ବୈଦ୍ୟେ ସେ କଥା କାନକୁ ଟିକିଏ ହେଲେ ନେଲେ ନାହିଁ । କଥାରେ ବାଧା ପଡ଼ୁଛି ଦେଖି ଦେବେନ୍ଦ୍ରକୁ ବାହାରି ଯିବାକୁ ଆଦେଶ ଦେଲେ । ଫେରି ଯଉଁଠୁ ଭିନ ଗ୍ରାମଜଣେ ଡାକ୍ତରଙ୍କ ପାଖକୁ ଗଲା, କେହି ଆଗେ ଠଙ୍କାର ଛାଟିଦେ କଲା ତ କେହି ବି ଦେଖା ଦେଲା ନାହିଁ । ଶେଷରେ କ୍ଷୀଣ ହୋଇ ଅନନ୍ୟୋପାୟ ଦେବେନ୍ଦ୍ର ଶ୍ରାନ୍ତ କ୍ଲାନ୍ତ ଅବସନ୍ନ ହେତୁ ସେହି ପୁରୁଣାକାଳିଆ ଝାଙ୍କୁଲା ବରଗଛ ମୂଳରେ ଟିକିଏ ବସି ପଡ଼ିଲା ।

ରାଧା ଓ ଶିଶୁଟିର ଭବିଷ୍ୟ ଚିତ୍ରପଟ ତା ଚକ୍ଷୁ ସାମନାରେ ନାଚୁଥିଲା । ସେ ଭାବିବାକୁ ଲାଗିଲା—ଖାଲି ହାତରେ ଯାଇ କଣ କରିବ ? ରାଧାକୁ ଏ ପୋଡ଼ା ମୁହଁ ବା ଦେଖାଇବ କିପରି ? ଗ୍ଲାନି ଓ କ୍ଷୋଭରେ ସେ ପାଗଳ ହୋଇ ଉଠିଲା । ସେ ଭାବିଲା, ଆଉ—! ଆଜି ପଳାଇଲେ ଏ ବିଶ୍ବର ତା ହୃଦୟରେ ଉଠନ୍ତା—ତାର କି ଏପରି ସ୍ଥଳରେ ବଞ୍ଚି ରହିବା ଦରକାର ? ନାଁ, ନାଁ—ତାଠାରୁ ମରଣ ଶତ ଗୁଣେ ଶ୍ରେୟସ୍କର । ଆଜି ତାର ଅନ୍ତରତମ ପ୍ରଦେଶରେ ମଥିତ ଓ ପୁଞ୍ଜିଭୂତ ଦୁଃଖର କଥା ଟିକିଏ ହେଲେ କେହି ବୁଝିଲା ନାହିଁ ।

ସେ କଣ ସଂସାରରେ ଏତେ ହେୟ, ନୀଚ ଓ ଅପଦାର୍ଥ ! ସେ ପରପାଇଁ ନ କରିଚି କଅଣ ?—ସ୍କୁଲରେ ଓ କଲେଜରେ ପଢ଼ୁଥିବାବେଳେ ସେ କାହାକୁ ବା ସାହାଯ୍ୟ ନ କରିଚି ?—କିନ୍ତୁ ଆଜି ତାର ଏ ହୀନ ଦଶାର କଥା କେହି ହେଲେ ବୁଝିଲ ନାହିଁ ?—ପୂର୍ବ ସ୍ମୃତିମାନ ତା ମନରେ ଜାଗରୁକ ହୋଇ ଉଠିଲ ! କେଉଁ ଅଜ୍ଞାତ ଶକ୍ତିର ବଶୀଭୂତ ହୋଇ ସେ ସହରର ବାହାରକୁ ଚାଲିଲ । ସହରର ବାହାର ଲୋକେ ପାର୍ବଣ ଉତ୍ସବର ମହୋତ୍ସବ ଦେଖି-ବାକୁ ସହରକୁ ଆସୁଥିଲେ, କିନ୍ତୁ ଦେବେନ୍ଦ୍ର ଆଜି ଜୀବନ ଓ ମରଣ ସଙ୍ଗେ ଯୁଝିବାକୁ ବାହାରକୁ ଚାଲି ଯାଉଥିଲ !

ସହରର କିଛି ଦୂରରେ **B. N. Ry.**ର ରେଲ ଲାଇନ କେଉଁ ଆଡ଼କୁ ଚାଲି ଯାଇଚି । ଦେବେନ୍ଦ୍ର ଆସି ତାର ଉପରେ ଶୋଇ ପଡ଼ିଲ । ଘରର ସ୍ତ୍ରୀ ଓ କନ୍ୟାର କରୁଣ ଛବି ଚଳଚିତ୍ର ସଦୃଶ ତା ମନରେ ଭାସିଗଲା । ସହସା ତାକୁ ଜଣାଗଲା—ଗାଡ଼ି ଆସୁଚି । କ୍ଷଣକ ପାଇଁ ସେ ଭୟରେ ଥାଟି କରି ଉଠିଲ । କିନ୍ତୁ ପର ମୁହୂର୍ତ୍ତରେ ବାଧାର ଅବସ୍ଥା ତାକୁ ଭୟଶୂନ୍ୟ କରି ପକାଇଲ । ରେଲ ନିକଟ ହୋଇ ଆସିଲ । ଇଞ୍ଜିନ ସିଟି ଦେଲେ ସୁଦ୍ଧା ଦେବେନ୍ଦ୍ର ଟିକିଏ ହେଲେ ହଲଚଲ ହୋଇ ନାହିଁ । ଗାଡ଼ିକୁ ଅଟକାଇବା ପାଇଁ ଡ୍ରାଇଭର ବହୁ ପ୍ରଯତ୍ନ କଲ, କିନ୍ତୁ ଗାଡ଼ି ଯେ ଖୁବ୍ ନିକଟରେ ପହଞ୍ଚି ଯାଇଥିଲ—ଦେବେନ୍ଦ୍ରର ଶରୀରକୁ ଟିକି ଟିକି କରି ଆଗକୁ ଚାଲିଗଲା ।

ଦେବେନ୍ଦ୍ରର ଜୀବନର ଅନ୍ତ ଯାଗରେ ଦୂର ବାୟୁ ଲହରୀ ଜଣାଇ ଦେଲ ପାର୍ବଣ ପୂଜାରେ ଅଭିନୀତ ରାବଣର ବି ଅନ୍ତ ହୋଇଗଲ । ସନ୍ଧ୍ୟାରାଣୀ ତାର କଜଳକଳା ଓଢ଼ଣୀଟି ଟାଣି ଧରିତ୍ରୀରେ ଅସି ଉଭା ହୋଇଗଲା, ତାର ପ୍ରାଣର ଦେବତା ରାଜାଙ୍କୁ

ଅର୍ଘ୍ୟ ଓ ନୈବେଦ୍ୟ ଅର୍ପଣ କରବ ବୋଲି । ଲୋକମାନେ ଘରକୁ ଫେରଲେ ।

ଦେବେନ୍ଦ୍ର ସାମାନ୍ୟ ଭୂତ ମୁଠାକର ସନ୍ଧାନ ପାଇଁ ଏମିତ କାହାକୁ ସ୍କୁଲ ଯାଇଥିଲା, ଯେଉଁଠାରେ **"No Vacancy"**ର କଠୋର ଓ ନିର୍ମମ ଶବ୍ଦ ଶୁଣିବାକୁ ପଡ଼ିଲା ନାହିଁ, ଯଉଁଠି **"Get Out"** ସାଙ୍ଗରେ ଉପରିସ୍ଥିର ମନମାଫିକ ଗାଳି ଓ ଶେଷରେ ଧକ୍କା ସହିବାକୁ ପଡ଼ିଲା ନାହିଁ—ଯଉଁଠି **"Qualification"**ର କୌଣସି ପ୍ରଶ୍ନ ବି ଉଠିଲା ନାହିଁ ।—ଅଳ୍ପ ସେ ମହାପଥର ଶେଷ ଯାଏଁ ।।

---

## ତୃତୀୟ ଅବଦାନରେ—

ଶ୍ରୀଯୁକ୍ତ ରାଜକିଶୋର ପଟ୍ଟନାୟକ ବି, ଏସ୍, ସି, ବି, ଏଲ୍‌ଙ୍କର ଅମର ଲେଖନୀରୁ—

## ଉପାମେଘ

[ବଡ଼ଗଳ୍ପ]

# ଶିଳ୍ପୀ

ଚିତ୍ରକର ଶଚୀବାବୁ ମଉଜ ମଜ୍‌ଲସ୍‌ରେ ଓ ଫୁର୍ତ୍ତିରେ ସୁନ୍ଦର ଦିନଗୁଡ଼ାକ କଟାଇବା ପାଇଁ ତାଙ୍କୁ ଅସି ଗୋଟିଏ ବିଧବା ସ୍ତ୍ରୀ ଘରେ ଥାଆନ୍ତି । ଘରେ ତାଙ୍କର କେହି ନାହିଁ—ଛୁଟି ବୋଲି ଚାଲି ଆସିଥିଲେ ଚାଲି । ଦିନ ଶେଷ ହୋଇ ଆସୁଛି । ଶଚୀବାବୁ ତାଙ୍କ ବିଛଣାରେ ବସି ଗୋଟିଏ ଝରକା ଭିତର ଦେଇ ଦିବସର ବିଷର୍ଣ୍ଣ-ରୂପ ଦେଖୁଥାନ୍ତି । ଗାଢ଼ କଳା ମେଘ ଆକାଶରେ ଛାଇ ହୋଇ ଯାଉଛି । ଥଣ୍ଡା ପବନରେ ଦିହ ବରଫ ପାଲଟି ଯିବା ଭଳି ବୋଧ ହେଉଛି । ଗଛ ଗୁଡ଼ାକ ଯେମିତି ଏଇ ଝଡ଼ର ନିର୍ଯ୍ୟାତନ ସହି ନ ପାରି କାନ୍ଦି କାନ୍ଦି ଭୂଇଁରେ ଲୋଟି ଯାଉଛନ୍ତି । ଗଛର ହଳଦିଆ ପତରଗୁଡ଼ା ପବନରେ ଆକାଶ ଓ ପୃଥିବୀର ଚାରିଆଡ଼େ ବିଛୁଡ଼ି ହୋଇ ପଡ଼ୁଛନ୍ତି ।

ବିଦାୟ ଗ୍ରୀଷ୍ମ, ବିଦାୟ ! ଶିଳ୍ପୀଙ୍କ ଆଖିରେ ଏ ଦୃଶ୍ୟ କାବ୍ୟ-ରୂପ ନେଇ ଫୁଟି ଉଠିବାର ଆଶା କରାଯାଏ । କିନ୍ତୁ ଶଚୀବାବୁଙ୍କର ଏ ଦୃଶ୍ୟ ଉପଭୋଗ କରିବା ପରି ମନର ଅବସ୍ଥା ଠିକ୍ ଏ ହେଲେ ନାହିଁ । ବେକାର ହୋଇ ବସି ବସି ସେ କ୍ଲାନ୍ତ ହୋଇ ପଡ଼ିଛନ୍ତି । ତେବେ ବି ସେ ମନକୁ ପ୍ରବୋଧ ଦେଇ କହିଲେ—"ଧାଃ କାଲି ତ ଏଠୁ ଚାଲିଯିବ । ଆଜି କଣ ?"

ଘରର ଚାରିଆଡ଼େ ଟେବୁଲ୍, କୁଶାନ, ବାକ୍ସ, ବିଛଣା ଚାଦର ଓ ଅନ୍ୟାନ୍ୟ ଅସବାବ୍ ଗୁଡ଼ାକ ସବୁ ଏଣେ ତେଣେ ବିଛୁଡ଼ି ହୋଇ

ପଡ଼ୁଛି । ଝରକାଟାରୁ ପର୍ଦ୍ଦା ଖୋଲା ହୋଇଛି । ଘରଟା କେତେ-ବେଳୁ ଖରଖା ଖରଖ ହୋଇ ସଫା ସୁନ୍ଦର ହେଲଣି । କାଲି ଶଚୀ-ବାବୁ ସହରକୁ ଫେରିଯିବେ । ବଧବା ବୁଢ଼ୀଟି ବାହାରି ଯାଇଛି କାଲିକା ପାଇଁ ଗାଡ଼ି ଭଡ଼ା କରି ଆଣିବା ଲାଗି । ମା'ର ଅନୁପସ୍ଥିତି-ଟାକୁ ଗୋଟିଏ ମହା ସୁଯୋଗ ମନେ କରି ବିଂଶ ବର୍ଷୀୟା ଯୁବତୀ ପ୍ରତିମା ଚେତର ସମସ୍ତ ହେଲା ଆସି ଶଚୀବାବୁଙ୍କ ଘରେ ବସିଛି । କାଲି ଶିଳ୍ପୀ ଚାଲିଯିବେ । ତାଙ୍କୁ କହିବାର ତାର ଅନେକ କଥା ଅଛି । ସେ କଥା କହି ଯାଉଛି—ପାଟିରେ ବାଟୁଳି ବାଜୁନାହିଁ । କିନ୍ତୁ ମନେ ହେଉଛି, ସେ ଯେପରି କିଛି କହୁନାହିଁ । ବାରଂବାର ସେ ଶଚୀବାବୁଙ୍କର ମୁଣ୍ଡର ଲମ୍ବା ଲମ୍ବା ବାଳଗୁଡ଼ାକ ଆଡ଼କୁ ଜଳଭରା ନୟନରେ ଚାହୁଁଛି । ଶଚୀବାବୁ ଅନ୍ୟମନସ୍କ ଭାବରେ ପ୍ରତିମାର କଥା ଶୁଣି ଯାଉଛନ୍ତି । ସେ ଶ୍ରାନ୍ତ, କ୍ଲାନ୍ତ ଓ ଅବସନ୍ନ । ପ୍ରତିମା ଯେତେବେଳେ ଗୋଟିଏ ପିଲାଟି ପରି କାନ୍ଦି ପକେଇଲା, ସେ ଭାରି ବିରକ୍ତ ହୋଇ ତୀକ୍ଷ୍ଣ ଦୃଷ୍ଟିରେ ତା ଆଡ଼କୁ ଚାହିଁ ତାଙ୍କ ସ୍ୱାଭା-ବିକ କର୍କଶ ଗଳାରେ କହିଲେ, "ମୁଁ ବାହା ହୋଇ ପାରିବି ନାହିଁ ।"

"କାହିଁକି ପାରିବେ ନାହିଁ ?" ପଚାରିଲା ପ୍ରତିମା ।

"ଯେ ଶିଳ୍ପୀ ଏବଂ ଯଉଁ ଲୋକ କେବଳ ଶିଳ୍ପ ପାଇଁ ବଞ୍ଚି ରହିଥାଏ, ସେ କେବେହେଁ ବିବାହ କରି ପାରେନାହିଁ । ଶିଳ୍ପୀର କୌଣସି ପ୍ରକାର ବନ୍ଧନ ରହିଲେ ଚଳେ ନାହିଁ । ତାକୁ ନୀଳ ଆକାଶର ପକ୍ଷୀ ପରି ମୁକ୍ତ, ବନର ବାଘ ପରି ସ୍ୱାଧୀନ ହେବାକୁ ହୁଏ ।"

"କିନ୍ତୁ ମୁଁ କଣ ତୁମ ଉପରେ ଗୋଟିଏ ଭାରି ବୋଝ ପରି ଚୁପି ବସିବି ବା ତୁମ ଉନ୍ନତି-ପଥରେ କୌଣସି ବାଧା କିମ୍ବା ବିଘ୍ନ ଘଟେଇବି ବୋଲି ମନେ କରୁଛ ?"

"ମୁଁ ନିଜ ପାଇଁ କୌଣସି କଥା କହୁନାହିଁ । ମୁଁ କହୁଥିଲି ସମସ୍ତ ଶିଳ୍ପୀ ଜାତଟାର କଥା । ବିଖ୍ୟାତ ଶିଳ୍ପୀମାନଙ୍କ ଭିତରେ କେହି କେବେ ବିବାହ କରି ନାହିଁ ।"

"ତୁମେ ଯେ ବିଖ୍ୟାତ ହେବ ମୁଁ ତା ଠିକ୍ ଜାଣେ । କିନ୍ତୁ ତୁମେ ମୋ ଅବସ୍ଥା ଟିକିଏ ଭାବି ଦେଖନି । ମୁଁ ମା'ଙ୍କୁ ଭାରି ଡରେଁ । ସେ ଭାରି ରାଗୀ । ମା ଯଦି ଜାଣି ପାରନ୍ତି ଯେ ତୁମେ ମୋତେ ବାହା ହବ ନାହିଁ, ସବୁ ଦୋଷ ମୋରି ଉପରେ ପଡ଼ିବ । ଓଃ, ମୁଁ କି ହତଭାଗିନୀ । ତାପରେ, ତୁମେ ଘରଭଡ଼ା ପାଇଁ ଘଇସାଟିଏ ହେଲେ ତ ଦେଇନାହିଁ ଏଯାଏଁ ।"

"ଯାଃ !—ମୁଁ ଆଜି ଭଡ଼ା ଚୁକ୍ତି କରି ଦେବି ।" ହଠାତ୍ ଉଠି ପଡ଼ି ଶଚୀବାବୁ ଘର ମଧ୍ୟରେ ପଦଚାରଣା କରିବାକୁ ଲାଗିଲେ ।

"ମୋର ବିଦେଶ ଯିବା ଉଚିତ," ସେ କହିଲେ । ତାପରେ ପ୍ରତିମାକୁ ବୁଝେଇ ସୁଝେଇ କହିଲେ ଯେ ତାଙ୍କର ବିଦେଶ ଯିବା ଛଡ଼ା ଅନ୍ୟ ଗତି ନାହିଁ । ଥରେ ଯଦି ଖଣ୍ଡେ ଛବି ବିକ୍ରୀ କରି ପାରନ୍ତି······

"ହିଁ ତା ଠିକ୍ ।" ପ୍ରତିମା କହିଲା ନମ୍ର ସ୍ୱରରେ । "କିନ୍ତୁ ତୁମେ ଏହି ଝରିଦିନ ଭିତରେ ଗୋଟେ ଛବି ଆଙ୍କିଲ ନାହିଁ କାହିଁକି ?"

"ତୁ କଣ ଭାବୁ ଏଇମିତି ଜାଗାରେ ବସି ମୁଁ କାମ କରି ପାରିବି ?" ଶିଳ୍ପୀ କହିଲେ । "ତାପରେ ମୁଁ ମଡ଼େଲ ବା କେଉଁଠୁ ପାଇବି ?"

ଠିକ୍ କେହି ଯେପରି ଜୋରରେ ଧକ୍କା ମାରି ଦରଜା ଖୋଲି ଘରେ ପ୍ରବେଶ କଲା । ପ୍ରତିମା ମନରେ ସବୁବେଳେ ଡର

ଥାଏ କାଳେ କେତେବେଳେ ତା ମା ଆସି ପହଞ୍ଚିଯିବ । ସେ ଶୀଘ୍ର ଦୌଡ଼ି ସେ ଘରୁ ପଳେଇଲା । ଶଚୀବାବୁ ରହିଲେ ଏକା ।

ଅନେକ ବେଳ ଯାଏ. ସେ ଘର ଭିତରେ ଏପାଖ ସେପାଖ ବୁଲିଲେ । ସେ ଶୁଣିବାକୁ ପାଇଲେ ବୁଢ଼ୀ ପାଖରୁ ଅନ୍ୟାୟ ଭାବରେ ବେଶୀ ପଇସା ନେବା ପାଇଁ କହିବାରୁ, ତା ମନେ ମନେ ସେ ଗାଡ଼ୋୟାନକୁ ଗାଳି ଦେଉଛି । ଶଚୀବାବୁ ବିରକ୍ତ ହୋଇ ସେଲ୍ଫ ପାଖରେ ଯାଇ ଛିଡ଼ା ହେଲେ ଏବଂ ବହୁତ ବେଳଯାଏ ଭ୍ରୂ କୁଞ୍ଚିତ କରି ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିଲେ ଝରକା ଦେଇ ସେହି ଶୂନ୍ୟ ନୀଳ ଗଗନକୁ ।

"ତତେ ଯା ମରଣ ନ ହେଲା—" ସେ ଶୁଣିଲେ ବୁଢ଼ୀ ପ୍ରତିମାକୁ ଗାଳି ଦେଉଛି । "କି ପାପରେ ଯେ ତତେ ଗର୍ଭରେ ଧରି-ଥିଲି ! ହେ ଭଗବାନ୍‌......।"

ଶଚୀ ମନ ଇଚ୍ଛା ଥଣ୍ଡା ପାଣି ଟିକିଏ ପିଇ ଆରାମ୍ ଚେୟାର ଉପରେ ଯାଇ ପଡ଼ିଗଲେ । ତାଙ୍କ ମନ ଭିତରୁ ନିବିଡ଼ କଳା ବଉଦଟା ଅସ୍ତେ ଅସ୍ତେ ଅଦୃଶ୍ୟ ହୋଇଗଲା । ତାଙ୍କ ଅନ୍ତର ହସି ଉଠିଲା । ସେ ରଙ୍ଗୀନ୍ ସ୍ୱପ୍ନ ଦେଖିବାକୁ ଲାଗିଲେ ।

କଳ୍ପନାରେ ଭାବିଲେ ମନେ ମନେ ସେ କେଡ଼େ ବଡ଼ ହେବେ । ଭବିଷ୍ୟତର କାର୍ଯ୍ୟପନ୍ଥା ବିଷୟରେ କିଛି ଭାବି ପାରିଲେ ନାହିଁ, କିନ୍ତୁ ସ୍ପଷ୍ଟ ଦେଖିବାକୁ ପାଇଲେ ପତ୍ରିକାଗୁଡ଼ିକ ଏକ ମୁଖରେ ତାଙ୍କର ପ୍ରଶଂସା ଗାଇବାରେ ବ୍ୟସ୍ତ । ପ୍ରତି ଦୋକାନରେ ତାଙ୍କ ଛବି ବିକ୍ରୀ ହେଉଛି ।

ତାଙ୍କ ବନ୍ଧୁମାନଙ୍କର ତେଣୁ ଖାଲି ହିଂସା ହେବା ବଡ଼ ସ୍ୱାଭା-ବିକ । ସେ ଭାବିବାକୁ ଲାଗିଲେ—ସେ ଗୋଟେ ସୁନ୍ଦର 'ଡ୍ରଇଂ

ରୁମ୍‌ରେ ବସିଛନ୍ତି, ଆଜି ତାଙ୍କୁ ଘେରି ବସିଛନ୍ତି ପ୍ରଜାପତି ପରି ସୁନ୍ଦରୀ ସ୍ତ୍ରୀମାନେ । କିନ୍ତୁ ଏ କଳ୍ପନାଟା ତାଙ୍କ ନିକଟରେ ଗୋଟେ ଛାଇ ପରି ମନେ ହେଲା । ସେ ତାଙ୍କ ଜୀବନରେ କେବେହେଲେ ଡ୍ରଇଂ ରୁମ୍ ଦେଖି ନାହାନ୍ତି, କି ପ୍ରତିମା ଛଡ଼ା ପ୍ରାୟ ଅନ୍ୟ କୌଣସି ସ୍ତ୍ରୀଙ୍କୁ ଭଲ କରି ଚିହ୍ନି ନାହାନ୍ତି । ଜୀବନ ସମ୍ବନ୍ଧରେ ଯନ୍ତ୍ର-ମାନଙ୍କର କୌଣସି ଜ୍ଞାନ ନାହିଁ, ସାଧାରଣତଃ ସେମାନେ ବହି ସାହାଯ୍ୟରେ ଜୀବନର ଛବି ଆଙ୍କିବାକୁ ଚେଷ୍ଟା କରନ୍ତି । ଶଚୀବାବୁ କିନ୍ତୁ କେବେହେଲେ ବହି ପଢ଼ନ୍ତି ନାହିଁ । କେତେଥର ସେ 'ରାଧାନାଥ ଗ୍ରନ୍ଥାବଳୀ' ପଢ଼ିବାକୁ ଚେଷ୍ଟା କରିଛନ୍ତି, କିନ୍ତୁ ଦ୍ୱିତୀୟ ପୃଷ୍ଠାରେ ପହଞ୍ଚିବାକ୍ଷଣି ଦଶାଦଅ ନିଦ ତାଙ୍କୁ କେଉଁଠୁ ଆସି ମାଡ଼ି ବସେ ।

"ଏ ପାଉଁସ ଆଉ ନିଆଁ ଧରିବ ନାହିଁ"—ତଳେ ଚୁଲିର ପାଟି ଶୁଭିଲା । "ପ୍ରତିମା, କାଠ କୋଇଲା ଥୋଡ଼ା ଆଣ ମ ।"

ଶଚୀବାବୁ ତଳକୁ ଓହ୍ଲାଇ ଯୋଟେଇ ଘର ଆଡ଼କୁ ଗଲେ । ସେଠି ସେ ଖାଇବାକୁ ବସି କହିବାକୁ ଲଗିଲେ— "ଆର୍ଟିଷ୍ଟ ହେବା କି ଚମତ୍କାର ! ମୋର ଯନ୍ତ୍ରଠିକ ଶୂନ୍ୟ ସେଠିକି ଯାଇ ପାରେ, ମୋ କାମରେ ବାଧା ଦେବା ପାଇଁ ମୋ ଉପରେ କେହି ନାହିଁ । ନିଜେ ମୁଁ ମୋର ମୁରବି ।" ଖାଇବା ଶେଷ ହେଲାରୁ ସେ ତାଙ୍କ ଘରକୁ ଯାଇ ବିଛଣାରେ ପଡ଼ିଗଲେ । ସେ ପ୍ରାୟ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଶୁଅନ୍ତି । କିନ୍ତୁ ଆଜି ଆଖିପତା ଦିଟା ବୁଜି ଆସୁଛି, ଏହି ସମୟରେ ମନେ ହେଲା କିଏ ଯେପରି ଖୁବ୍ ବଡ଼ ପାଟିରେ ତାଙ୍କ ନାଁ ଧରି ଡାକୁଛି । ଆଖି ଖୋଲି ଦେଖନ୍ତି ତ ତାଙ୍କର ବନ୍ଧୁ ଆର୍ଟିଷ୍ଟ ବିପିନ ବାବୁ । ବିପିନବାବୁ ପୁରୀକୁ ଯାଇ-ଥିଲେ ଖବରଟା କହିଦେବାକୁ ଦେବାଲାଗି ।

"ବାଃ !" ଶଚୀବାବୁ ହଠାତ୍ କହି ପକାଇଲେ । "ମୁଁ ତୋତେ ସତରେ ଦେଖୁଚି ନାଁ—ସ୍ୱପ୍ନରେ ?" ତାପରେ ନାନା କଥା ଭିତରେ ପଚରା ପଚରି ହେଲେ ଭଲ ମନ୍ଦ, ହାଲ୍ ଚାଲ୍ ଓ ବର୍ତ୍ତମାନ ଦେଶର ଖବର ଅନ୍ତର ।

"ତୁ ଏଥର ଅନେକ ଛବି ଆଙ୍କିଛୁ, ନାଁ ?" ଶଚୀବାବୁ ପଚାରିଲେ ।

"ହଁ, କିଛି ଆଙ୍କିଛି । ତୁ କଣ କରୁଛୁ ?"—ଶଚୀବାବୁ ଖଟ ତଳୁ ଖଣ୍ଡେ ଧୂଳି ଆଉ ମାଙ୍କଡ଼ସା ଜାଲରେ ଭର୍ତ୍ତି ହୋଇଥିବା 'କାନଭାସ' ବାହାର କରି ଲଜ୍ଜାରେ ବିପିନବାବୁଙ୍କ ସାମନାରେ ଧଇଲେ ।

"ଏଇ ଦେଖ...ଗୋଟିଏ ଉପେକ୍ଷିତା ସ୍ତ୍ରୀ, ଝରକା ପାଖରେ ବସିଛି । ଏତିକି ମାତ୍ର ହୋଇଛି । ଏପର୍ଯ୍ୟନ୍ତ ଶେଷ ହୋଇ ନାହିଁ ।"

ଛବି ଖଣ୍ଡିକ ପ୍ରତିମାର । ଗୋଟିଏ ଝରକା ପାଖରେ ସେ ବସିଛି । ଠିକ୍ ଏ ଦୂରରେ ଗୋଟିଏ ବଗିଚାର କିଛି ଅଂଶ ଦେଖା ଯାଉଛି । ବିପିନ ବାବୁଙ୍କୁ କିନ୍ତୁ ଭଲ ଲାଗିଲା ନାହିଁ କାହିଁକି ସେଇଟା !

"ହୁଁ । ଭାବ ଅଛି, ଦୂରତ୍ୱ ବୁଝାଯାଉଛି—କିନ୍ତୁ, ମାନେ ?"

× × × ×

ସନ୍ଧ୍ୟାବେଳକୁ ବର୍ତ୍ତମାନ ଉତ୍କଳର ଗୌରବମାନ ଐତିହାସିକ ଶରତ ବାବୁ ଆସିଲେ ସେଠାକୁ, ଚିତ୍ରକର ଶଚୀବାବୁଙ୍କ ସଙ୍ଗରେ ଦେଖା ସାକ୍ଷାତ କରିବାକୁ । ସେଇ ନିକଟରେ ଥାଆନ୍ତି ସେ, ବୟସ ୩୬ ପାଖାପାଖି ହେବ ।

"ମୁଁ ଗୋଟିଏ ନୂଆ ଛବି ଆଙ୍କିବି, ବୁଝିଲେ ?" କହିଲେ ସେ ।

ତାପରେ ବାହାରିକି ପାଟି କରି ଉଠିଲେ—"ପ୍ରତିମା—ଏ ପ୍ରତିମା ! ଜଲଦି ଯାଇ ମଧୁଆ ପାଖରୁ ଦୁଧ ସେରେ ନେଇ ଆସିବୁ ।"

ତିନି ବନ୍ଧୁ ଘରର ଏ ପାଖରୁ ସେପାଖ ଯାଏଁ ପଦ ଚାରଣ କରିବାକୁ ଲାଗିଲେ । ଅନବରତ ସେମାନେ କେବଳ ବକୁଥାନ୍ତି । ଭବିଷ୍ୟତର ଉନ୍ନତି, ନାମ, ଅର୍ଥ ଓ ଯଶ ଛଡ଼ା ତାଙ୍କ କଥାରେ ଆଉ କିଛି ନଥାଏ । ସେମାନେ ଭାବୁ ନାହାନ୍ତି ଯେ ସମୟ ଚାଲି ଯାଉଛି—ପ୍ରତିଦିନ ଜୀବନ ଅବସାନର ପଥ ଆଡ଼କୁ ଆଗେଇ ଚାଲିଛି, ଅଥଚ ଏତେଦିନ ହେଲା ସେମାନେ କିଛି ନ କରି କେବଳ ଅନ୍ୟ ଉପରେ ନିର୍ଭର କରି ସଂସାର ପଥରେ ଚାଲି ଆସୁଛନ୍ତି । ଆନନ୍ଦରେ ସେମାନେ ଆଜି ଉଚ୍ଛ୍ୱସିତ । ଭବିଷ୍ୟତର ଉଜ୍ଜ୍ୱଳ ଛବି ସେମାନଙ୍କ ଚକ୍ଷୁ ସମକ୍ଷରେ ଉଦ୍ଭାସିତ ।

ରାତି ଦଶଟା ବେଳେ ଶରତବାବୁ ବିଦାୟ ଗ୍ରହଣ କରି ବସାକୁ ଗଲେ । ସ୍ୱପନବାବୁ ରାତିଟା ଶଚୀବାବୁଙ୍କ ସାଙ୍ଗରେ କଟେଇ ଦେବେ ବୋଲି ଅଟକି ରହିଲେ । ଶୋଇବା ଆଗରୁ ଶଚୀବାବୁ ଜଳଘର ଆଡ଼କୁ ଚାଲିଲେ । ଯାଇଁ ଯାଇଁ ଅନ୍ଧାରରେ ସେ ଦେଖିବାକୁ ପାଇଲେ ପ୍ରତିମାକୁ । ପ୍ରତିମା ଗୋଟେ ବେଞ୍ଚ ଉପରେ ବସି ଆଣ୍ଠୁ ଉପରେ ହାତ ରଖି, ଶୂନ୍ୟ ନକ୍ଷତ୍ରଖଚିତ ନୀଳ ଆକାଶକୁ ଅନାଇ ରହିଚି । ତାର ମଳିନ, ନିର୍ଜୀବ ମୁଖ ଉପରେ ତୃପ୍ତିର ଛାୟା । ଆନନ୍ଦରେ ତାର ନୟନ ଦ୍ୱୟ ଉଜ୍ଜ୍ୱଳ ହୋଇ ଉଠୁଚି ।

"କିଏ !—ପ୍ରତିମା ? ତୁ କ'ଣ ଭାବୁଚୁ ?" ଶଚୀବାବୁ ପଚାରିଲେ ।

"ମୁଁ ଭାବୁଚି, କିପରି ତୁମେ ଏ ସଂସାରରେ ବିଖ୍ୟାତ ହେବ," ଅତି ଧୀର ନରମ ସ୍ୱରରେ କହିଲା ସେ—"କଳ୍ପନାର ଚକ୍ଷୁରେ ଦେଖୁଚି ମୁଁ, ତୁମେ କିପରି ବିଖ୍ୟାତ ହେବ—ମୁଁ ତମର ସବୁ କଥା ଶୁଣିଚି—ଭାବୁଚି—ଆଉ ଭାବୁଚି······।"—ଆଉ ପଦେ ବି କଥା କହି ପାରିଲା ନାହିଁ ।

ପ୍ରଭମା ଆନନ୍ଦରେ ହସି ଉଠିଲା, ତାପରେ କାନ୍ଦିଲା । ଗଭୀର ଶ୍ରଦ୍ଧାରେ ତା ହାତ ଦୁଇଟି ଯେ କେତେବେଳେ ସେ ଶଚୀବାବୁଙ୍କ କାନ୍ଧ ଉପରେ ଥୋଇଲାଣି ତାକୁ ମାଲୁମ ନାହିଁ । ତା ପରେ ସେ ଶଚୀବାବୁଙ୍କ ବାହୁଯୁଗଳରେ ଆବଦ୍ଧ—। ସେ ଅନୁଭବ କଲା ଯେତେବେଳେ ଶଚୀବାବୁ ତା କୋମଳ ଗାଲରେ ଗୋଟିଏ ନରମ ଚୁମ୍ବା ଥୋଇ ଦେଲେ ।

(୨ୟ ବର୍ଷ ୧ମ ସଂଖ୍ୟା 'ଉତ୍ତର'ରେ ପ୍ରକାଶିତ)

---

# ବେଶ୍ୟା କିଏ ?

ଯାଙ୍କ କାଳ ହେଲା ବେଳକୁ ମତେ ହୋଶ ନ ଥିଲା । କିନ୍ତୁ ଯେତେବେଳେ ମା'ଙ୍କର ମୃତ୍ୟୁ ହେଲା, ସେତେବେଳେ ମତେ ବାର ବର୍ଷ । ସେତେବେଳେ ମା'ଙ୍କର ବା ମୋର କେହି ନିକଟ ସଂପର୍କୀୟ ବ୍ୟକ୍ତି ନ ଥାନ୍ତି । ସେଥିପାଇଁ ମା'ଙ୍କର ମୃତ୍ୟୁ ପରେ ସଂସାର ମତେ ଶୂନ୍ୟ ଦେଖାଗଲା । ସେତେବେଳେ ମୁଁ ପୋଷ୍ଟ ଅଫିସରେ ବୟ୍ ପିୟୁନ (Boy Peon) ଥିଲି । ପୋଷ୍ଟ ମାଷ୍ଟର ଭୋଳାନାଥବାବୁ ମତେ ଖୁବ୍ ଆଦର ଓ ସ୍ନେହ କରୁଥିଲେ । ଦିନେ ଏକାନ୍ତ ପାଇ ସେ ମତେ ଡାକି କହିଲେ—"ରଜନୀ, ଆଜିକାଲି ତୁମେ ବଡ଼ ଉଦାସ ଦେଖା ଯାଉଚ । ମାଙ୍କ ମୃତ୍ୟୁ ପରେ ତୁମକୁ ଘରେ ଏକାକୀ ରହିବାକୁ ବଡ଼ କଷ୍ଟ ହେଉଥିବ । ଆମ ଘରେ ଆସି ରୁହ ।"

ଏକେ ତ ପୋଷ୍ଟ ଅଫିସରେ ସବୁଠୁଁ ବଡ଼ ଅଫିସର, ଦ୍ଵିତୀୟରେ ମୋ ଉପରେ ସଦାବେଳେ କୃପାଦୃଷ୍ଟି ରଖୁଥାନ୍ତି । ସେଥିପାଇଁ ମୁଁ ତାଙ୍କ ଅନୁରୋଧ ଟାଳି ଦେଇ ପାରିଲି ନାହିଁ । ସୁତରାଂ ପରଦିନ ଜିନିଷ ପତ୍ର ସବୁ ନେଇ ଆସିଲି ।

ସେହି ଭୋଳାବାବୁଙ୍କ ଘରେ ତାଙ୍କୁ ଲଗାଇ ଛଅ ପ୍ରାଣୀ । ସେ, ତାଙ୍କ ସ୍ତ୍ରୀ ସରଳା, ଗୋଟିଏ ବିଧବା ବୁଢ଼ୀ ଓ ତାଙ୍କ ଝିଅକର ଶୁକ୍ରୀ । ଶୁକ୍ରୀ ବୟସରେ ମୋ ସାଙ୍ଗ ପଡ଼ିବ । ସେ ସେଠି ଛୁଦର

ଯିବ ବନ୍ଧୁ ନ ଥିଲା । ତାଙ୍କ ଘରେ ତାର ଇଚ୍ଛାଭ ନାଇବରଠୁଁ ବନ୍ଧୁତ ଥିଲାରେ । ତାର କାରଣ—ବାବୁ ତାଙ୍କୁ ସ୍ନେହ କ ନୁହ କଛି କୁହନ୍ତି ନାହିଁ । ଏଇଁ ତନି ଜଣଙ୍କ ଛଡ଼ା, ତାଙ୍କର ଦ ଭଉଣୀ ଓ ଗୋଟିଏ ସାନ ଭାଇ ବ ଥିଲା । ଭଉଣୀଙ୍କର ବିବାହ ହୋଇ ଯାଇଥିଲା, ସେମାନେ ଶଶୁର ଘରକୁ ଚାଲି ଯାଇଥିଲେ । ସାନ ଭାଇ ରମାନାଥ ରେଲବାଇରେ କାମ କରୁଥିଲା । ତାଙ୍କ ଘରର ସମସ୍ତଙ୍କ ସାଥିରେ ମୋର ଖୁବ୍ ଭଲ ପରିଚୟ ଥିଲା, କାରଣ ପହିଲ ତାଙ୍କ ଘରେ ଠିକିଏ କାମକର ମତେ ଡାକରା ପଡ଼ୁଥିଲା । ଭୋଳାବାବୁ ଯେପରି ସଜ୍ଜନ ଓ ଉଦାରଚେତା, ତାଙ୍କ ଦ୍ୱିତୀୟ ସ୍ତ୍ରୀ ବ ସେହିପରି ବଡ଼ ମୃଦୁଭାଷିଣୀ ଓ ହସମୁଖୀ ଥିଲେ । ସୌନ୍ଦର୍ଯ୍ୟରେ ଅନୁପମ । କ୍ରୋଧ କମ୍ବା ରାଗ କଣ ଯେପରି ସେ କଛି ଜାଣନ୍ତି ନାହିଁ । ପତିଙ୍କ ସେବାରେ ସେ ଠିକିଏ ହେଲେ ତ୍ରୁଟି କରୁ ନ ଥିଲେ । ସେଥିପାଇଁ ଘରେ ଖୁବ୍ ସୁଖ ଓ ଶାନ୍ତି ଥିଲା । ମୁଁ ତାଙ୍କୁ 'ମା' ଓ ପୋଷ୍ଟ ମାଷ୍ଟରଙ୍କୁ 'ବାବୁ' ବୋଲି ଡାକୁଥିଲି ।

ବାବୁଙ୍କର ମୋ ଉପରେ ଯେପରି ଅଟଳ ବିଶ୍ୱାସ ଓ କୃପା ଦୃଷ୍ଟି, ମା'ଙ୍କର ବ ସେଇପରି ଥିଲା ।

ଯେତେବେଳେ ମୁଁ ବଯ୍ସ୍ ପିଅନରୁ ପୋଷ୍ଟମେନ ହୋଇଗଲି, ଯାହାକଛି ମାସିକ ବର୍ତ୍ତନ ଆଣେ, ମାଙ୍କ ପାଖରେ ଜମା ଦେଇ ଦଏ । ସେ ଯାହା ଉଚିତ ମନେ କରନ୍ତି ମୋ ପାଇଁ ଖର୍ଚ୍ଚ କରନ୍ତି । ମୋ ମା ମରିବା ସମୟରେ ନଗଦ ଶହେ ଟଙ୍କା ଓ ଗହଣା ଗଣ୍ଠି କଛି ଆଣି ମା'ଙ୍କ ପାଖରେ ବ ରଖିଥିଲି ।

ସହରରେ ଜଣେ ଡାକ୍ତର ବାବୁଙ୍କର ଖୁବ ଅନ୍ତରଙ୍ଗ ବନ୍ଧୁ ଥିଅନ୍ତି । ଡାକ୍ତର ଓ ତାଙ୍କ ସ୍ତ୍ରୀ ଯେମିତି ଆମ ବସାକୁ ବୁଲି ଆସୁ-ଥିଲେ, ଆମ ବାବୁ ଓ ମା ବ ସେମିତି ତାଙ୍କ ବସାକୁ ଡେଢେ-

ବେଳେ କେତେବେଳେ ବୁଲି ଯାଉଥିଲେ । ଡାକ୍ତରଙ୍କ ବୟସ ଚାଳିଶ ଭିତରେ ହେବ । ବଡ଼ ହସମୁହାଁ ଲୋକ ସେ । ସହରଟା ଯାକ ତାଙ୍କ ନାଁ ଥିଲା ଓ ଲୋକମାନେ ତାଙ୍କ ଉପରେ ଶ୍ରଦ୍ଧା ଓ ବିଶ୍ୱାସ ରଖୁଥିଲେ । ସେ ଆମ ଘରକୁ ଆସିଲେ, ମା ଆମର ତାଙ୍କ ସାଙ୍ଗରେ ଖୁବ୍ ଗପ କରନ୍ତି । ମା ତାଙ୍କୁ ଲଜ କରନ୍ତି ନାହିଁ ।

ଦିନେ ବାବୁଙ୍କ ସାନଭାଇ ରମାନାଥ ବାବୁ ଆସି ଗୁଡ଼ୀକି ତାଙ୍କ ସାଙ୍ଗରେ ନେଇଗଲେ । ତାଙ୍କ ସ୍ତ୍ରୀର ଦେହ ସେଠି ଭଲ ନ ଥିଲା । ବର୍ତ୍ତମାନ ଘରେ ମୁଁ, ଶୁକ୍ରା, ମା ଓ ବାବୁ ।

ପୋଷ୍ଟ ଅଫିସରେ କାମ ସାରି ବାବୁଙ୍କ ଆଗରୁ ବସାକୁ ଆସିଯାଏଁ ।

ଦିନକର କଥା । ସେଦିନ କାମ କମ୍ ଥିଲା । ସେଇଥିପାଇଁ ତିନିଟାବେଳେ ମୁଁ ଘରକୁ ଚାଲି ଆସିଲି । ମୋର ବେଗ୍‌ଟା କାଢ଼ି ରଖିଦେଲି । ଲୁଗା ବଦଳାଇ ଗୋଟେ କାମରେ ବାହାରି ଯାଉ-ଥିବାବେଳେ ମା ଉପରୁ ମତେ ଡାକିଲେ । ମୁଁ ଉପରେ ପହଞ୍ଚିଲା ବେଳକୁ ସେ ଖଟ ଉପରେ ଶୋଇ ଗୋଟେ ଉପନ୍ୟାସ ପଢ଼ୁ-ଥିଲେ । ମୁଁ ଦି ତିନି ମିନିଟ ଯାଏ ଛିଡ଼ା ହେଇ ତା ପରେ ପଚାରିଲି, —"କଣ ମା ?"

ସେ ମୁହଁ ଶୁଖାଇ କହିବାକୁ ଲାଗିଲେ—"ଆଚ୍ଛା, ରଜନୀ ! ଯଦି ତୁମେ ମତେ ମା ବୋଲି ନ କହି, ମୋ ନାମ ଧରି ଡାକ ତ କଣ କିଛି ଖରାପ ହବ ?"

ମୁଁ କହିଲି—"ତା କିମିତି ହବ ମା ?".

ସେ ଖଟ ଉପରୁ ଆଡ଼େ ଦୃଷ୍ଟି ଦେଇ କହିଲେ—"ହଁ, ଯଦି ତୁମେ ଚାହିଁବ ତ ସବୁ କିଛି ହେଇ ପାରିବ ।"

ଏତକ କହି ଦେଇ ସେ ଚୁପ ହୋଇଗଲେ । ତା ପରେ ବହିଟି ଉଠାଇ ତା ପୃଷ୍ଠାଗୁଡ଼ାକ ଏପାଖ ସେପାଖ ଓଲଟାଇବାକୁ ଲାଗିଲେ । ମୁଁ ବି ସେଇଠି ଚୁପ୍‌ଚାପ୍ ଛିଡ଼ା ହୋଇ ତାଙ୍କ ଭାବ ଭଙ୍ଗୀ ନିରୀକ୍ଷଣ କରିବାକୁ ଲାଗିଲି । କିଛି ସମୟ ପରେ ସେ ଶାନ୍ତ ଭଙ୍ଗ କରି ମୋ ମୁହଁଆଡ଼କୁ ଟିକିଏ ଅନାଇ କହିଲେ—"ଅଚ୍ଛା, ଯାଅ ।"

ତତ୍‌କ୍ଷଣାତ୍ ମୁଁ ଧୀରେ ଧୀରେ ଚାଲି ଆସିଲି । କିନ୍ତୁ ଦୁଆରକୁ ଚୈପି ଆସି ମୁଁ ରହିଗଲି । ତାଙ୍କ ମା ତାଙ୍କ ପାଖକୁ ଖଣ୍ଡେ ଚିଠି ଦେଇଥିଲେ । ମୁଁ ତାକୁ ଦବା ପାଇଁ ଭୁଲି ଯାଇଥିଲି । ମୁଁ ଫେରି ପଡ଼ିବାବେଳେ ଶୁଣିବାକୁ ପାଇଲି, ମା କହୁଛନ୍ତି—"କେମିତିକା ମଣିଷଟେ ! କିଛି ବୁଝି ପାରୁ ନାହିଁ !"

ମାଙ୍କ ଚିଠି ଦେଇ, ମୋ ଘରକୁ ଆସି ଶୋଇ ପଡ଼ିଲି । କିନ୍ତୁ ତାଙ୍କ ଶେଷ ଶବ୍ଦଗୁଡ଼ିକ ମୋ କାନରେ ଏପର୍ଯ୍ୟନ୍ତ ପ୍ରତିଧ୍ୱନିତ କରୁଥାନ୍ତି—"କେମିତିକା ମଣିଷଟେ ! କିଛି ବୁଝି ପାରୁ ନାହିଁ !"

ମୁଁ ଭାବିବାକୁ ଲାଗିଲି—କାହିଁକି ସେ ମତେ ଏ କଥା କହିଲେ ? ସେ ମତେ କହିଲେ,—ଅଜଣ୍ଠୁ ମୋ ନାମ ଧରି ଡାକିଲେ କଣ ଷତି ହବ । ଦିନ୍ ଦି ବଖତ ଖାଇବା ପରେ, ନିଜ ହାତରେ ପାନ ଭାଙ୍ଗି ମତେ ଖୋଇ ଦିଅନ୍ତି । ମୁଁ ଯେତେବେଳେ ଖାଇ ବସିଥାଏ, ମୋ ପାଖକୁ ଆସି ଛିଡ଼ା ହୁଅନ୍ତି, ଆଉ କେବେ କେବେ କେତେବେଳେ ବି ପାଖରେ ବସି ଯାଆନ୍ତି । ଦିନେ ସେ କହିଲେ, "ଆଜି ତୁମେ ପାନ ବନାଅ ରଜନୀ ! ମୁଁ ତୁମ ହାତ ଭଙ୍ଗା ପାନ ଖାଇବି ।" ତା ହେଲେ ଏ ସବୁର ମତଲବ କଣ ?

ଏହି ସବୁର ବିଗ୍ଭର କରୁଁ କରୁଁ ସନ୍ଧ୍ୟା ହୋଇଗଲା ।

ଉପରୋକ୍ତ ଘଟନାର ଠିକ୍ ମାସକ ପରେ, ଦିନେ ହଠାତ୍

ବାବୁ ମତେ ଡାକି କହିଲେ—"ଦେଖ, ରଞ୍ଜନୀ ! ଅଜି ରମାନାଥ ପାଖକୁ ତାର ଆସିଛି । ସେ ମତେ ଡକେଇଛନ୍ତି । ବନ୍ଧୁ କଣ ବେମାର ଅଛି । ସେଥିପାଇଁ ମୁଁ ଅଜ ଯାଉଛି । ତୁମେ ଯେପରି ଠିକ୍‌ଏ ବୁଝିଆର ହୋଇ ରୁହ । ଅଜ ଘର ଉପରେ ନଜର ରଖି-ଥିବ । ତୁମେ ତ ଜାଣିବା ଶୁଣିବା ଲୋକ ।"

ସେଇଦିନ ଘୁରିଟା ଗାଡ଼ିରେ ସେ ରମାନାଥ ବାବୁଙ୍କ ପାଖକୁ ଗ୍ଲଲଗଲେ । ଘରେ ରହିଲୁ କେବଳ ମୁଁ, ମା ଓ ଶୁକା ।

ସେଇ ଦିନର ସେଇ ଘଟନା ପରଠୁଁ ମୋ ହୃଦୟ ତାଙ୍କ ଅଡ଼କୁ ଠିକ୍‌ଏ ଢଳି ପଡ଼ିଛି । ଘଣ୍ଟାଏ ଏକାନ୍ତରେ ବସି ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗ ଗ୍ଲଲ୍ ଚଳଣିର ଆଲୋଚନା ଓ ଯୁକ୍ତି ତର୍କ ମନେ ମନେ କରିବାକୁ ଲଗିଲି । ଜଣେ ଆଶ୍ରୟହୀନ ଯୁବକର ଅବସ୍ଥା ଠିକ୍ ସେହିପରି—ଯେପରି ନଈରେ ବୁଡ଼ି ଯାଉଥିବାବେଳେ ଜଣେ ଭାସି ଯାଉଥିବା ପତରକୁ ମଧ୍ୟ ଧରିବାକୁ ପ୍ରଯନ୍ କରେ । ଠିକ୍ ସେହି ଅବସ୍ଥା ମୋର ଥିଲା ।

ସେ ଦିନ ସନ୍ଧ୍ୟାରେ ମା ମତେ କହିଲେ—"ଅଜ ମୁଁ ସିନେମା ଦେଖିବାକୁ ଯିବି । ତୁମେ ମୋ ସାଙ୍ଗରେ ଗ୍ଲଲ । ଯିବ ନାହିଁ ନା ?"

ମୁଁ କହିଦେଲି—"ଭଲ କଥା ।"

ଆମେ ଦିହେଁ ଶୁକାକୁ ଏକା ଘର ଜଗେଇ ଦେଇ ସିନେମା ଦେଖିବାକୁ ଗଲୁ । ବଗିରୁ ଓହ୍ଲାଇ ମା ମତେ ପଗ୍ଲରିଲେ—"ଅଜ କ ଖେଳ ଅଛି ?"

ମୁଁ କହିଲି—"ବନ୍ଦନ ।"

"ସେ ଖେଳ ତ ଖୁବ୍ ସୁନ୍ଦର । ନିଅ, ପଇସା ନେଇଯାଅ । ଟିକଟ କାଟି ଅଣ ।"—ଖଣ୍ଡିଏ ପାଞ୍ଚ ଟଙ୍କିଆ ନୋଟ ବଢ଼ାଇ ଦେଇ ମତେ କହିଲେ । ମୁଁ ନେଇଗଲି ବକ୍ସର ଟିକଟ ଆଣିଲି । କିନ୍ତୁ ମୋ ପାଇଁ ଆଣିଲି ଖଣ୍ଡେ ଚାରିଅଣିଆ ଟିକଟ । ମୋ ହାତରେ ଚାରିଅଣିଆ ଟିକଟ ଦେଖି ସେ କହିଲେ—"ଏଇଟା କାହା ପାଇଁ ଆଣିଚ ?"

ମୁଁ କହିଲି—"ମୋ ପାଇଁ ।"

"ତା ହେଲେ ମୁଁ କଣ ବକ୍ସରେ ଏକା ବସିବି ? ତୁମେ ମୋ ସାଙ୍ଗରେ ଚାଲ, ସେଇଠି ବସିବ ।"—ମା କହିଲେ ।

ସେ ବକ୍ସ ପାଖରେ ପହଞ୍ଚିବା କ୍ଷଣି ବାହାର ପରଦାଗୁଡ଼ାକ ପଡ଼ିଗଲା । ଦର୍ଶକବୃନ୍ଦ ଆମକୁ ଦେଖି ପାରିଲେ ନାହିଁ । ସେ ଚେୟାର ଉପରେ ବସିଗଲେ । ମୁଁ ତାଙ୍କ ପଛରେ ଚୁପ୍‌ଚାପ୍ ଠିଆ ହୋଇ ରହିଲି । ସେଇକ୍ଷଣି ସେ ତାଙ୍କ ପାଖରେ ବସିବାକୁ ଇଙ୍ଗିତ କରି ମତେ କହିଲେ—"ବସିଯାଅ ନା ।"

ମୁଁ ଚେୟାର ସେ ପାଖରେ ଶାନ୍ତରେ ବସିଗଲି । ଏପର୍ଯ୍ୟନ୍ତ ବି ଖେଳ ଆରମ୍ଭ ହୋଇ ନ ଥିଲା । ମତେ ଏକପାଖିଆ ବସିଥିବାର ଦେଖି ସେ ପୁଣି କହିଲେ—"ଭଲ କରି ବସ । ଜାଗା ତ ଢେର ଅଛି ।"

"ଅଜ୍ଞା । ମୁଁ ଆରାମରେ ବସିଚି ।"—ମୁଁ କହିଲି ।

ଏଥର ସେ କିଛିଟା ଉଦାସୀନ ଭାବରେ କହିଲେ—"ତୁମେ କଣ ମତେ ଡରୁଛକି ? ମୁଁ ବରାବର କିଛିଦିନ ହେଲା ଦେଖି ଆସୁଚି, ତୁମେ ମୋ ସାଙ୍ଗରେ କଥା କହିବାକୁ ବି ସଙ୍କୋଚିତ ବୋଧ କରୁଚ । ଯେତେବେଳେ ମୁଁ କିଛି କହୁଚି ତ 'ହଁ' କି 'ନାଁ'ରେ

ତାର ଜବାବ ଦେଇ ଦଉଚ । ତୁମ୍ଭ ଦେହ କଣ କିଛି ଖରାପ ହୋଇଚି କି ?"

ମୁଁ ମଥା କୁଣ୍ଡାଇବାକୁ ପ୍ରଯତ୍ନ କରି କହିଲି—"ନାଁ, ମୋ ଦେହ ତ ସମ୍ପୂର୍ଣ୍ଣ ଭଲ ଅଛି ।"

ତୃତୀୟ ଘଣ୍ଟା ବାଜିଲା । ଅନ୍ଧକାର ହୋଇଗଲା । ଖେଳ ଆରମ୍ଭ ହେଲା । କିନ୍ତୁ ସେ ଥରେ ପରଦା ଆଡ଼କୁ ମୁହଁ ବୁଲାଇ, ଫେର୍ ମୋ ଆଡ଼କୁ ମୁହଁ ଆଣି ମୋ ହାତ ତାଙ୍କ ହାତରେ ରଖି କହିଲେ—"ସତ କୁହନ ! ତୁମେ ମତେ ଡରୁନାହଁ ?"

ତାଙ୍କ ହାତରେ ମୋର ହାତର ସ୍ପର୍ଶ ହଜାର ଥର ହୋଇଚି । କିନ୍ତୁ ଆଜିର ଏହି ସ୍ପର୍ଶରେ ମୋର ରୋମାଞ୍ଚ ହୋଇଗଲା । ହୃଦୟର ସ୍ପନ୍ଦନର ବେଗ ବଢ଼ିଗଲା । ମୁଁ ଏକ ଅଜଣା ପ୍ରକାର ସୁଖ ଅନୁଭବ କରିବାକୁ ଲାଗିଲି । ମୁଁ ମୋ ହାତ ଟିକି କରି କହିଲି—"ନାଁ, ନାଁ......ମା । ମୁଁ ଆପଣଙ୍କୁ ମୋଟେ ଡରୁନାହିଁ ।"

ସେହିକ୍ଷଣି ସେ ମୋ ହାତକୁ ଚିପି ଧରି କହିଗଲେ—"ପୁଣି ମୋଠାରୁ ଦୂରରେ ରହିବାକୁ ଚେଷ୍ଟା କରୁଚ ? ପ୍ରଥମେ ଯେତେ-ବେଳେ ତୁମେ ଆମ ଘରକୁ ଆସିଲ, ହସିକି କଥା କହୁଥିଲ, ଘଣ୍ଟା ଘଣ୍ଟା ବସି ରହୁଥିଲ । କିନ୍ତୁ ଏକ୍ଷଣି ସେ କଥା ନାହିଁ ।"

"ଏକ୍ଷଣି ବି ସେମିତି ହସି ହସି କଥା କହିବାକୁ ଓ ଘଣ୍ଟା ଘଣ୍ଟା ପାଖରେ ବସି ଗପ ସପ କରିବାକୁ ଇଚ୍ଛା ହଉଚି, କିନ୍ତୁ...।" ମୁଁ କହିଲି ।

"କିନ୍ତୁ କିନ୍ତୁ କଣ ? ତୁମେ ଅନ୍ୟର ମନର ଭାବ ଜାଣିପାର ନାହିଁ । କମିତିକା ଜାଣିବ ? କେତେବେଳେ ଚେଷ୍ଟା କଲେ କିନା !"—ମା କହିଲେ ।

"ହଁ । ଆପଣଙ୍କ କଥା ଠିକ୍ । ତାହା ବି କେତେକାଂଶ। ବୁଝି ପାରୁଛି"—ମୁଁ କହିଦେଲି ।

ମା ମୋ ହାତ ଘଞ୍ଚ ଦେଇ କହିଲେ—"କଣ ବୁଝିଛ ? ମୁଁ କେତେ ଥର ଚେଷ୍ଟା କଲି ଯେ ତୁମେ ଜାଣ । ମୋ ହୃଦୟର ଧ୍ୱନି ଶୁଣ । କିନ୍ତୁ ତୁମେ ପଥର ପାଲଟି ଗଲ ।"

ମୁଁ ଏଇଥର ମୋର ସମସ୍ତ ସାହସ ଠୁଳ କରି ତାଙ୍କ ହାତ ମୋ ହାତରେ ରଖି କହିବାକୁ ଲାଗିଲି—"ସରଳା ! ମୁଁ ତୁମକୁ ମୋ ନିଜ ହୃଦୟ ଚିରି ଦେଖାଇ ପାରେଁ କି ଏଥିରେ କେବଳ ତୁମ ପ୍ରତିମା ବିରାଜମାନ କରୁଚି । ମୁଁ ତୁମକୁ ଡରୁନାହିଁ—ଡରୁଛି, ନିଜେ ନିଜର ପାପ-ପଙ୍କରେ ପଶିବାକୁ । ଯଦି ଆଜି ତୁମେ ଅବିବାହିତା ହୋଇଥାନ୍ତ ତ······।"

ସେ କମ୍ପିତ ଭୀରୁସୁଲଭତା ସହିତ କହିଲେ—"ତାହେଲେ, ତୁମେ କଣ ମତେ ଚାହଁ ?"

ମୁଁ ଦୃଢ଼ ଭାବରେ କହିଲି—"ହଁ, ପୃଥିବୀ ଓ ଆକାଶର ପ୍ରତ୍ୟେକ ସୁନ୍ଦର ବସ୍ତୁଠାରୁ ଅଧିକ । କିନ୍ତୁ······"

ସରଳା ତା କୋମଳ ହାତ ଦୁଇଟି ମୋର ଶରୀର ଉପରେ ଓ ମୋର ବକ୍ଷ ସ୍ଥଳରେ ତା ମଥାଟି ରଖି ଅତି ସନ୍ତୋଷ ଭାବରେ ପଚାରିଲା—"କିନ୍ତୁ କଣ ?"

ଓଃ ! ସେହି ସମୟ ମତେ ସ୍ୱର୍ଗୀୟ ସୁଖର ଅନୁଭବ ଦେଲା । ସେହି କ୍ଷଣକ ପାଇଁ ମୁଁ ସଂସାରକୁ ଏକାବାରେ ଭୁଲିଗଲି । ଦୁନିଆର ଏକ ଅତ୍ୟନ୍ତ ଦୁର୍ଲଭ ବସ୍ତୁ ମୋ ହାବୁଡ଼ରେ ପଡ଼ିଚି । ସରଳାର ଅଧା ଆଖି ଖୋଲି ହୋଇଥାଏ । ସେ ଜିଜ୍ଞାସୁ ଭାବରେ ମୋ ମୁହଁକୁ ଅନାଇ ରହିଥାଏ । ମୁଁ ସିନେମା ହଲରେ ଦେଖିଥିବା

ବତର ପ୍ରକାଶରେ ଦେଖିଲି—କେଡ଼େ ସୁନ୍ଦର ଓ ମାଦକତାଭରା ତାର ଆଖି ଦୁଇଟି । ମତେ ନିଶା ଧରିବାକୁ ଲାଗିଲା । ମୁଁ ପାପ ଅଉ ପୁଣ୍ୟର ଅନ୍ତରକୁ ବିଲ୍‌କୁଲ୍ ଭୁଲିଗଲି । ସରଳାକୁ ଚାପି ଧରି ମୋ ହୃଦୟ ସାଥିରେ ଭିଡ଼ି ଧରିଲି । ତାର ଗରମ ଗରମ ସୁଗନ୍ଧିତ ଶ୍ୱାସ ମୋ କାନ ବାଟେ ଦେଇ ପବନରେ ବିଲୀନ ହୋଇଯାଏ । ମୁଁ ସଙ୍ଜ୍ଞାହୀନ ଭାବରେ ସ୍ୱର୍ଗରେ ବିଚରଣ କରିବାକୁ ଲାଗିଲି ।

ଇଣ୍ଟରଭେଲରେ ଘଣ୍ଟି ବାଜିବାରୁ ଆମ ଦୁହିଁଙ୍କର ସୁଖ ସ୍ୱପ୍ନ ଭାଙ୍ଗିଗଲା । ହଲରେ ଜ୍ୟୋତି ପ୍ରକାଶ ହୋଇଗଲା । ମତେ ଜଣାଗଲା—ଯେପରି ସ୍ୱର୍ଗରୁ ନନ୍ଦନ କାନନରୁ ଅସି ନର୍କରେ ଖସି ପଡ଼ିଲି ।

ସିନେମାରୁ ଫେରି ସରଳା ଉପରକୁ ନିଜ ଶୋଇବା ଘରକୁ ଗୁଲିଗଲା । ମୁଁ ଅସି ଆପଣା ଘରେ ଶୋଇ ପଡ଼ିଲି । ସାରା ରାତି ମୋ ଆଖିରେ ନିଦ ନାହିଁ । ବାରଣ୍ଡାରେ ବୁଲୁ ବୁଲୁ ହୃଦୟରେ ବିଗ୍ଭରର ଝଡ଼ ବହିବାକୁ ଲାଗିଲା । ଭଲ ମନ୍ଦ ବିଗ୍ଭର ନିଜ ନିଜ ଭିତରେ କଳହ କରିବାକୁ ଲାଗିଲେ ।

"ମତେ ତୁମର ସମ୍ପୂର୍ଣ୍ଣ ବିଶ୍ୱାସ ?"—ବାବୁଙ୍କର ଏ ଶବ୍ଦ ମୋ ହୃଦୟରେ ବଜ୍ରାଘାତ କରିବାକୁ ଲାଗିଲା । ଅନୁଶୋଚନାରେ ହୃଦୟ ଦବିଗଲା । ହାୟ ! ରୂପର ନିଶାରେ ଅଜ୍ଞାନ ହୋଇ ମୁଁ କଣ କରି ପକାଇଲି ? ମୁଁ ବାବୁଙ୍କ ପାଖରେ ବିଶ୍ୱାସଘାତକତା କରିଛି । ଏଥର ପ୍ରାୟଶ୍ଚିତ୍ତ କରିବାକୁ ହେବ । ପୁଣି ଭାବିଲି—ସରଳା କେଡ଼େ ସୁନ୍ଦରୀ ! କିପରି ବଡ଼ ବଡ଼ କଳା ଆଖି ଯୋଡ଼ିକ ତାର ! ଗୋଲାପି ଶାଢ଼ୀ ତା ଦେହ ଉପରେ କିପରି ଖେଳୁଥାଏ ? କିନ୍ତୁ, ଏହି ସୁନ୍ଦର ଆବରଣ ଭିତରେ କଣ ଅଛି ? କିଛି ହେଲେ ବି ନାହିଁ ।

ଏହି ସବୁ ବିଷୟର ଚିନ୍ତାରେ ମଗ୍ନ ରହି ସକାଳ ହୋଇଗଲା । ଅନ୍ନ-ଗ୍ଳାନିର କାରଣ ମୋ ଠାରୁ, ମୋ ଘର ଠାରୁ ବାହାରି ଯାଉ ନ ଥାଏ । ଏପରି ମାଲୁମ ହେଉଥାଏ କି ଘରୁ ବାହାରକୁ ବାହାରିଲେ ମତେ ସାରା ସଂସାର ଅବିଶ୍ୱାସ କରିବ ଓ ଘୃଣାର ତୀବ୍ର ଦୃଷ୍ଟିରେ ଦେଖିବ । ଲୋକେ ମୋ ନାଁରେ ଅପବାଦ ରଟନା କରିବେ ଯେ 'ଏ ବିଶ୍ୱାସଘାତୀ ।' ହଡ଼ବଡ଼େଇ ଯାଇ ମୁଁ ବିଛଣା ଉପରେ ଅଧା ଶୋଇ ଓ ତକିଆ ଉପରେ ମୁହଁ ରଖି ଆଖି ବୁଜି ପଡ଼ି ରହିଲି ।

ଘଡ଼ିରେ ଅଠଟା ବାଜିବାରୁ ମା ଆସି ମୋ ଘର ଦୁଆର ମୁହଁରେ ଖଟ ଖଟ କଲେ । ମୁଁ କବାଟ ଖୋଲି ଦେଲି । ସେ ଦୁଆର ସାମନାରେ ମୁହଁ ଶୁଖାଇ ଛିଡ଼ା ହୋଇଥିଲେ ।

"କି, ରାତିରେ କଣ ନିଦ ହୋଇନାହିଁ ? ଆଖି କାହିଁକି ଲାଲ ପଡ଼ି ଯାଇଚି ?"

ରାତିର ସବୁ ବିଷୟର ଓ ବିଶ୍ୱାସଘାତକତାର ପ୍ରାୟଶ୍ଚିତ୍ତକୁ ମୁଁ ଭୁଲିଗଲି । ମୁହଁ ଶୁଖାଇ କହିଲି—"ମଶାଗୁଡ଼ାକ ମତେ ଆଜି ମୋଟେ ଶୋଇ ଦେଲେନାହିଁ ।"

ମା କହିଲେ—"ଅଫିସ ଯିବା ବେଳ ହୋଇଗଲାଣି । ଗାଧୋଇ ପଡ଼ି ଜଳଖିଆ କର ।"

ଆଉ ମୁଁ ଗାଧୋଇ, ଜଳଖିଆ ଖାଇ ଅଫିସକୁ ଚାଲିଗଲି ।

ମନୁଷ୍ୟର ଅନ୍ତଃକରଣ ସଦାବେଳେ ସଦ୍ ପରାମର୍ଶ ଦିଏ । କିନ୍ତୁ ମନୁଷ୍ୟ ସେହି ସଦ୍ ପରାମର୍ଶକୁ ନ ଶୁଣି ମନ ମାଫିକ କାମ କଲେ ତା ଅନ୍ତଃକରଣରେ ଗୋଟାଏ ଧକ୍କା ଲାଗେ । ଏହିପରି ଧକ୍କା ଯଦି ଅନ୍ତଃକରଣରେ ବରାବର ଲାଗୁଥାଏ, ତାହେଲେ ସେଥିରେ

ପରାମର୍ଶ ଦେବାକୁ ଶକ୍ତି ନ ଥାଏ । ସେହି ସମୟରେ ଲୋକେ କହନ୍ତି ଅମୁକର ଅନ୍ତଃକରଣ ମରି ଯାଇଛି । ଠିକ୍ ସେହି ଅବସ୍ଥା ମୋର ବି ଥିଲା । କିଛିଦିନ ପର୍ଯ୍ୟନ୍ତ ଅନ୍ତଃକରଣ ମତେ ଉଚିତ ପରାମର୍ଶ ଦେଲା । କିନ୍ତୁ ମୁଁ ତା ବିରୁଦ୍ଧ କାର୍ଯ୍ୟ କରିବାରେ ରହିଲି । ଶେଷରେ ମୋର ଅନ୍ତଃକରଣ ବି ମରିବାକୁ ଲାଗିଲା । ମୋର ଦିନକୁ ଦିନ ଶରୀରର ବଳ କମି ପାପର ପଥ ଆଡ଼କୁ ଅଗ୍ରସର ହେବାକୁ ଲାଗିଲି ।

ଯେତେବେଳେ ସେ ଚନ୍ଦ୍ର ମୁଖଟିକୁ ନେଇ ମୋ ସମ୍ମୁଖରେ ଉଭା ହୁଏ, ମୁଁ ଦୁନିଆର ସବୁ ବିଷୟ ଭୁଲି ଯାଇ, ଗୋଟାଏ ଅନ୍ୟ କଳ୍ପିତ ସଂସାରରେ ବିଚରଣ କରିବାକୁ ଲାଗେଁ । ଜଣେ ଅନୁଭବହୀନ ପ୍ରାଣୀ ପରି ମୁଁ ସରଳାର ରୂପ ଲହରୀରେ ଖେଳିବାକୁ ଲାଗେଁ । ସେ କଥା କହୁଥିଲେ, ମୋ ହୃଦୟ ଆନନ୍ଦରେ ନାଚିଥାଏ । ସେ ହସୁଥିଲେ, ମାନୀ ଚନ୍ଦ୍ରମାରୁ ପୀୟୂଷ ବର୍ଷା ହେଲା ପରି ଜଣାଯାଏ । ସେ ଅର୍ଦ୍ଧ-ମୁଦ୍ରିତ ଚକ୍ଷୁରେ ବିମ୍ବୋଷ୍ଠ-ଅଧରର ସ୍ୱଳ୍ପ ମଧୁର ହସ ଟାଣି କଟାକ୍ଷ ପାତ କଲେ, ସାକ୍ଷାତ୍ କାମଦେବ ଧନୁରେ ଶର ସନ୍ଧାନ କରୁଛନ୍ତି ବୋଲି ଜଣାପଡ଼େ ।

ଦିନ ଯେତେ ବିତିବାକୁ ଲାଗିଲା, ମୁଁ ଆଉ ସରଳା ଦୁହେଁ ଦୁହିଁଙ୍କର ସେତେ ନିକଟକୁ ଆସିବାକୁ ଲାଗିଲୁ ଓ ଘନିଷ୍ଠତା ବି ସେତେ ବଢ଼ିବାକୁ ଲାଗିଲା । ମୁଁ ଏହି ସଂସାରର ଖୁବ୍ ଉପରେ ଗୋଟିଏ ନୂଆ ସଂସାର ନିର୍ମାଣ କରୁଛି, ଆଉ ସରଳାକୁ ସେଠାକୁ ନେଇ ଯାଉଛି । ପୁଣି ଆମେ ଦୁହେଁ ପ୍ରେମର ଅଠାକାଠିରେ ପଡ଼ି ଯାଉଚୁଁ । ଦୁନିଆ ଆମର ଏହି ପ୍ରେମ ରହସ୍ୟ ସମ୍ବନ୍ଧରେ ଏକବାରେ ଅନଭିଜ୍ଞ । ଆଉ ବାବୁ ? ସେ ଭାରି ନିର୍ବୁଦ୍ଧିଆ । ତାଙ୍କର ତାଙ୍କ ସ୍ତ୍ରୀଙ୍କ ଉପରେ ଅଟଳ ବିଶ୍ୱାସ, ମୋ ଉପରେ ବି ।

ଏହାପରେ ମୁଁ ଓ ସରଳା ଗୋଟିଏ ନଉକାରେ ବସି ପାପ-ନଦୀରେ ବିନା ପାଲ୍ ଟାଣି ଜଲ୍‌ଦି ଜଲ୍‌ଦି ଚାଲି ଯାଉଥିଲୁ ।

ଡାକ୍ତରବାବୁ ଘର ଆମ ଘରକୁ ଯିବା ଆସିବା କରୁଥିଲେ । ମୁଁ ବି ଏଥିଣି ତାଙ୍କ ଘରକୁ ଯିବାକୁ ସୁରୁ କଲି । ସରଳା ଯେତେବେଳେ ଏକା ତାଙ୍କ ପାଖରେ ବସି ହସି ହସି ଗପସପ କରୁଥାନ୍ତି ମତେ ଈର୍ଷା ହୁଏ । ଅଜ ଯେତେବେଳେ ନୂଆ ଡାକ୍ତର ଓ ତାଙ୍କ ସ୍ତ୍ରୀଙ୍କ ସାଙ୍ଗରେ ବୁଲି ବାହାରନ୍ତି କିମ୍ବା ସିନେମା ଦେଖିବାକୁ ଯାଆନ୍ତି, ଖୁନ କରିବାର ପ୍ରଷଷ ପ୍ରବୃତ୍ତି ମୋ ମନ ଭିତରେ ଜାଗି ଉଠେ । ଡାକ୍ତରବାବୁ କଉଁ ଦିନ ସରଳାକୁ କିଛି ଉପହାର ଦେଲେ, ମୋ ମନ ସେହିଦିନ କୌଣସି କାମରେ ଲାଗେ ନାହିଁ । ମନ ଭିତରେ କଣ ଖୋଜି ବୁଲୁଥାଏଁ । ଏହି ପ୍ରତିଦ୍ୱନ୍ଦୀ ବିଷୟରେ ମୁଁ ସରଳାକୁ କିଛି କହିବାକୁ ଚାହୁଁଥିଲି । କିନ୍ତୁ ସେହି କହିବାର ସାହସଟିକ ମୋ ନିକଟରେ ଅଭାବ ଥାଏ । ଯଦି ସରଳା ମାନ କରି ବସି ରହେ·····? ଏହା ଭାବି ମୁଁ ଚୁପ୍ ରହିଯାଏଁ । ଏହିପରି ହୃଦୟରେ ଈର୍ଷାଗ୍ନି ଦି ପ୍ରତିଦିନ ବଢ଼ିବାକୁ ଲାଗିଲା ।

ଦିନେ ସରଳା ଘରକୁ ଗଲି । ସେ ସେତେବେଳେ ଗୋଟେ ଖିଂଜପୁସ ବୁଣୁଥିଲା ।

ମୁଁ କହିଲି—"ସର ! ତୁମେ ତ ଭାରି ଭଲ ବୁଣୁଛ । କା ପାଇଁ କରୁଛ ?"

ସେ ଠିକ ଏ ଭାବି କହିଲା—"ଡାକ୍ତରବାବୁ ଗୋଟେ ଖିଂଜପୁସ ପାଇଁ କହିଥିଲେ, ତାଙ୍କରି ଲାଗି ବୁଣୁଚି ।"

ଏଥିଣି ମୁଁ ମୋର ପ୍ରଜ୍ୱଳିତ କ୍ରୋଧ-ବହ୍ନିକୁ ଆଉ ହୃଦୟରେ ଘୋଡ଼ାଇ ରଖି ପାରିଲି ନାହିଁ । କିଛି ଭାବି ମୁଁ କହିଲି—"ସରଳା ! ତୁମର ଡାକ୍ତର ବାବୁଙ୍କ ସାଙ୍ଗରେ ଏକାନ୍ତରେ ଗପସପ କରିବା, ତାଙ୍କ ସାଙ୍ଗରେ ବୁଲି ଯିବା ପ୍ରଭୃତି ମତେ ଏସବୁ ଭଲ ଲାଗୁନାହିଁ ।

ଯେତେବେଳେ ସେ ତୁମକୁ ହସି ହସି କହନ୍ତୁ—'ସିନେମାକୁ ଯିବ ?' ଆଉ ତୁମେ ତାଙ୍କୁ ହସି ହସି ହଁ ଭରିଦଅ, ସେତେବେଳେ ମୁଁ ହୃଦୟରେ ଏକ ସଙ୍ଗରେ ଶତ କ୍ରୁରକାର ବୃଶ୍ଚିକ ଦଂଶନ ଅନୁଭବ କରେଁ । ତୁମେ ମୋଠାରୁ ଡାକ୍ତର ବାବୁଙ୍କୁ ଅଧିକ ଭଲ ପାଅ ।"

"ତୁମେ କଣ ମତେ ସନ୍ଦେହ କରୁଛ, ରଜନୀବାବୁ ? ଡାକ୍ତରବାବୁ ତୁମ୍ଭ ବାବୁଙ୍କର ଘନିଷ୍ଠ ବନ୍ଧୁ । ସେ ଭାରି ଭଲଲୋକ । ସେଇଥିପାଇଁ ମୁଁ ତାଙ୍କ ସାଙ୍ଗରେ ହସ ଖୁସି ଥଟ୍ଟା ତାମସା କରେଁ । ଯଦି ଏଇଥିପାଇଁ ତୁମ୍ଭ ମନରେ କୌଣସି ପ୍ରକାର କଷ୍ଟ ହଉଛି, ତାହେଲେ ଆଜିଠୁଁ ମୁଁ ତାଙ୍କ ସାଙ୍ଗରେ ମିଳାମିଶା ବନ୍ଦ କରିଦଉଛି । ମୁଁ ତୁମ୍ଭକୁ ଟିକିଏ ହେଲେ ଦୁଃଖିତ ହେବାର ଦେଖି ପାରିବି ନାହିଁ ।"

ଏହା ଶୁଣି ମୋ ହୃଦୟ ଶାନ୍ତିପୂର୍ଣ୍ଣ ହେଇଗଲା । ମୋ ପ୍ରେମ ତା ପାଇଁ ଅଧିକ ବଢ଼ିଗଲା ।

× × × ×

ବାବୁ ଦିନେ ସକାଳୁ ଉଠି ପୁଣି ହଠାତ୍ କୌଣସି କାର୍ଯ୍ୟ ବଶତଃ ପରେ ଫେରି ଆସିବେ କହି କୁଆଡ଼େ ଚାଲିଗଲେ । ମୁଁ ପୋଷ୍ଟ ଅଫିସ ଚାଲିଗଲି । ବର୍ତ୍ତମାନ ମୁଁ ପୋଷ୍ଟେଲ ଓଭରସିଅର ହେଇ ଗଲିଣି । ସେଇଥିପାଇଁ କାର୍ଯ୍ୟର ଆଧିକ୍ୟ ହେତୁ କଉଁ ଦିନ ଟିକିଏ ଆରାମ ପାଇ ପାରୁ ନ ଥିଲି ।

ସେଦିନ ଟିକିଏ ଜର ମାଲୁମ ହେଲା । ତାପରେ ଦେଢ଼ଟା ବାଜିବା ବେଳକୁ ଜର ଖୁବ୍ ବେଶି ଚାଲି ଆସିଲା । ଘରେ ଆସି ଦେଖେଁ ତ ଶୁକ୍ଳା ଘରେ ନାହିଁ । ସେ କୁଆଡ଼େ ଚାଲି ଯାଇଥାଏ । ମୁଁ ମଥା ବନ୍ଧା ପାଇଁ ଅମୃତାଞ୍ଜନ ଆଣିବାକୁ ସରଳା ପାଖକୁ

ଉପରକୁ ଗଲି । ଘର କବାଟ ଭିତରୁ ବନ୍ଦ ଥାଏ । ମୁଁ ଦୁଆର ନିକଟକୁ ଯାଇ ଲୁଚିଗଲି । ଭିତରୁ କାହାର କଥା କହିବାର ସ୍ୱର ଶୁଣାଗଲା ।

ମୁଁ କାନ ପାରି ଶୁଣି ଧାରିଲି, ଡାକ୍ତରବାବୁ ସରଳାକୁ କହୁ-ଚନ୍ତି—"ସୁନ୍ଦରି ! ତୁମ ଲାଗି ମୁଁ ସଂସାରର ସୁଖକୁ ଦଣ୍ଡକ ଭିତରେ ତ୍ୟାଗ କରିପାରେଁ । ତୁମର ଏକମାତ୍ର ଇଙ୍ଗିତରେ ମୁଁ ଅସମ୍ଭବ କାର୍ଯ୍ୟକୁ ବି ସମ୍ଭବ କରି ଦେଖାଇ ପାରେଁ । ତୁମେ କଣ ମୋର ଗୋଟିଏ ଛୋଟିଆ କାମ କରି ପାରିବ ନାହିଁ ?"

ସରଳା କହିଲା—"ମତେ ତୁମର ପୁରା ବିଶ୍ୱାସ । ଏକ୍ଷଣି ମୋ ପାଖରେ ରଜନୀର ପାଁଶହ ଟଙ୍କା ଅଛି । ତୁମେ ସେତକ ନେଇ ତୁମ କାମ କରିଦଅ । ମୁଁ ଜାଣେ, ରଜନୀର ବର୍ତ୍ତମାନ ଟଙ୍କାର ଆବଶ୍ୟକତା ନାହିଁ । ସେଥିପାଇଁ ସେ ମତେ ଏକ୍ଷଣି ମାଗିବ ନାହିଁ ।"

ଡାକ୍ତରବାବୁ ପୁଣି କହିଲେ—"ହଁ, ଠିକ୍ କଥା । ଆଜି ସିନେମାକୁ ଚାଲ ! ଆଜି କେବଳ ତୁମେ ଓ ମୁଁ ଦୁହେଁ ଯିବା !"

"ଭଲା ! ତୁମ ସାଙ୍ଗରେ ଯିବାକୁ ମୁଁ କେବେ ମନା କରୁଛି ! ବାବୁ ଦି ଦିନ ପରେ ଫେରିବେ । ଏହି ଦି ଦିନ ଓ ଦି ରାତି କେବଳ ତୁମରି ପାଇଁ ।"

ଏତକ କହି ଦେଇ ସରଳା ହସି ଦେଲା ।

ମତେ ଏପରି ମାଲୁମ ହେଉଥାଏ ଯେପରିକି ମୁଁ ପାଗଳ ହୋଇଯିବି । ଚୁପ୍ ଚାପ ତଳକୁ ଓହ୍ଲାଇ ଆସିଲି । ଘରୁ ବାହାରି ଆସି ଏକା ଚାଲିଲି । ଜଣା ନାହିଁ, କେଉଁ ରାସ୍ତାରେ ସହରର ବାହାରକୁ ମୁଁ ଚାଲି ଆସିଲିଣି । ଜରର ତେଜ ବି କମି ନ ଥାଏ । ଥକା ହୋଇ ଗୋଟିଏ ଜାଗାରେ ଘାସ ଉପରେ ଦାଢ଼ି କରି ବସି ପଡ଼ିଲି ।

ସେହି ସମୟରେ ମୋର ଥରେ ସରଳା ଉପରେ କ୍ରୋଧ ହେଉଥାଏ ତ ଥରେ ଡାକ୍ତର ବାବୁଙ୍କ ଉପରେ । ଶେଷରେ ମୁଁ ନିଷ୍ପତ୍ତିର ଚୂଡ଼ାନ୍ତ ସୀମାରେ ଉପନୀତ ହେଲି କି ସରଳା ହିଁ ପ୍ରକୃତ ଦୋଷୀ । ସେ ନିଜକୁ ବିବାହିତା ବୋଲି ଜାଣି ସୁଦ୍ଧା ମତେ କାହିଁକି ପ୍ରଲୋଭନ ଦେଖାଇ ସେ ସେହି ପ୍ରେମ ଜାଲର ଫାସରେ ପକାଇଲା ? ସେ ମୋର ଏହି ବହୁମୂଲ୍ୟ ଜୀବନକୁ ଏକବାରେ ନାଶ କରି ଦେଲା । ମତେ ସଂସାରରେ ମୁହଁ ଦେଖାଇବାକୁ ଟିକିଏ ହେଲେ ସ୍ପୃହା ଦେଲା ନାହିଁ । ସମ୍ପୂର୍ଣ୍ଣ ଦୋଷୀ । ବାର ବାର ଶତ ବାର, ସହସ୍ର ବାର, ଲକ୍ଷେ ବାର, ଅସଂଖ୍ୟ ବାର, ମୁଁ ସମସ୍ତଙ୍କ ସମ୍ମୁଖରେ କହିପାରେଁ —ସେହି ଏକମାତ୍ର ଦୋଷୀ । ମୁଁ କଦାପି ତାକୁ ଏ ସଂସାରରେ ଜୀବିତ ରହିବାକୁ ଦେବି ନାହିଁ ।

ମୁଁ ସେଠାରୁ ଉଠିଲି । ବଜାରକୁ ଯାଇ ଗୋଟେ ଦାଢ଼ିଆ ଛୁରି ଖରିଦ କଲି । ତାକୁ ପକେଟରେ ଭର୍ତ୍ତି କରି ବୁଲିଲି । ଘରେ ପହୁଞ୍ଚିଲି ବେଳକୁ ସନ୍ଧ୍ୟା ହେଇ ଯାଉଥିଲା । ମୁଁ ଚୁପଚାପ ମୋ ଘରେ ଯାଇ ଶୋଇ ପଡ଼ିଲି ।

ଟିକିଏ ବାଦେ ସରଳା ଆସି କହିଲା—“ଆଜି ଢେର ଡେରିରେ ଅଫିସରୁ ଆସିଲ !”

ମୁଁ କହିଲି—“ଆଜି କାମ ବେଶି ଥିଲା । ତେଣୁ ଏତେ ଡେରି ହୋଇଗଲା ।”

ସେ ପୁଣି କହିଲା—“ଯ’, ଜଳଖିଆ ଖାଇ ଦିଅ ।”

ମୁଁ କଡ଼ ଲେଉଟାଇ କହିଲି—“ନାଁ, ମୁଁ ଆଜି କିଛି ଖାଇବି ନାହିଁ । ମତେ ଆଜି ଜର ଆସିଛି । ମୁଁ ରାତିରେ କିଛି ଖାଇବି ନାହିଁ ।”

ସେ କିଛି ସମୟ ମୋ ପାଖରେ ବସିଲା । ମୋ ମଥାରେ ହାତ ମାରିଲା । ପୁଣି ଛିଡ଼ା ହୋଇ କହିଲା—"ଅଚ୍ଛା, ତୁମେ ଟିକିଏ ଆରାମ ନିଅ । ଆଜି କିଛି ଖାଅ ନାହିଁ । ଖାଲି ଟିକିଏ ଦୁଧପିଇ ଦିଅ । ମୁଁ ଉଲ୍ଲୁଣି ଶୁକ୍ରା ହାତରେ ପଠେଇ ଦଉଚି ।"

ଏତିକ କହି ସରଳା ଚାଲିଗଲା ।

ଟିକିଏ ପରେ ଶୁକ୍ରା ଦୁଧ ନେଇ ମୋ ଘରକୁ ଆସିଲା ।

ମୁଁ ତାକୁ ପଚାରିଲି—"ମା କେଉଁଠି ଅଛନ୍ତିରେ ଶୁକ୍ରା !"

"ସେ ଡାକ୍ତର ବାବୁଙ୍କ ସାଙ୍ଗରେ ସିନେମାକୁ ଯାଇଛନ୍ତି"—ସେ ଜବାବ ଦେଲା ।

ସେ ଟେବୁଲ୍ ଉପରେ ଦୁଧ ରଖି ଦେଇ ଚାଲିଗଲା । ମୁଁ ପୁଣି ବିଛଣାରେ ମଜ୍ଜି ରହିଲି । ଆଗରୁ ଆଜିଯାଏ ସବୁ ଘଟଣା କ୍ରମଶଃ ଶୋଚନା କରିବାକୁ ଲାଗିଲି ।

ଠିକ ଏଗାରଟା ବେଳେ ସରଳା ସିନେମାରୁ ଫେରିଲା ।

ଆସି ଶୁକ୍ରାକୁ କହିଲା—"ରଜନୀବାବୁ ଶୋଇ ପଡ଼ିଲେଣି କି ?"

ଶୁକ୍ରା ଉତ୍ତର ଦେଲା—"ଆଜ୍ଞା ହଁ !"

ତା ପରେ ସେ ଉପରକୁ ତା ଘରକୁ ଚାଲିଗଲା ।

ଘଡ଼ିରେ ବାରଟା ବାଜିଲା । ମୁଁ ଖଟରୁ ଉଠିଲି । ଦାଢ଼ି ଅ କ୍ଷୁରଟି ହାତରେ ଧରି ଧୀରେ ଧୀରେ ଉପରକୁ ଉଠି ମା'ଙ୍କ ଘର ଦୁଆର ପାଖରେ ଆସି ପହଞ୍ଚିଲି । ଦୁଆର ଭିତରୁ ବନ୍ଦ ଥାଏ ।

ସେହି ଘରର ସାମନାକୁ ଗୋଟେ ଦୁଆର । ଦ ପାହୁଲ ଛଡ଼ା ଗୋଟେ ଝରକା ଥାଏ । ଆଉ ପାଖରେ ... ଝରକା ।

ଦ'ଟା ଯାକେ ଭିତରୁ ବନ୍ଦଥାଏ । କିନ୍ତୁ ଫାଙ୍କରେ ଆଲୋକର ପ୍ରକାଶ ବାହାରକୁ ଫୁଟି ଉଠୁଥାଏ । 'ମୁଁ ଚୁପ୍ କରି ବୁରି ଯାଇ ଯଉଁ ପାଖରେ ଝରକା ଥିଲା ସେ ପାଖକୁ ଗଲି ।

ଝରକାଟା ଖୋଲା ଥିଲା । ସେଥିରୁ ବି ପରଦାକୁ ଆଲ ପଡ଼ୁଥିଲା । ଭାବୁଥିଲି—ଝରକା ବାଟେ ଯାଇ ଶୋଇଥିବା ବେଳେ ସରଳାର କାମ ମୁଁ ଖତମ କରିଦେବି । ଘର ଭିତରକୁ ଯିବା ପୂର୍ବରୁ ଝରକା ବାଟେ ଅନାଇଲି ।

ଯଉଁ ଜଘନ୍ୟ ଦୃଶ୍ୟ ମୁଁ ଘର ଭିତରେ ଦେଖିବାକୁ ପାଇଲି, ତାର କଳ୍ପନା ବି ଏ ଦୁନିଆରେ କେହି କରି ପାରିବେ ନାହିଁ ।

ଦେଖିଲି—ସରଳା ଆଉ ଗୁରୁକର ଟୋକା ଶ୍ୟାମା ଦୁହେଁ ଖଟ ଉପରେ ଶୋଇ ପ୍ରେମାଲିଙ୍ଗନ କରୁଛନ୍ତି ! ଦୁହିଁଙ୍କର ଲୁଗାପଟା ଅସ୍ତବ୍ୟସ୍ତ ।

ମୁଁ ମୋ ଘରକୁ ଲେଉଟି ଆସିଲି । ଛୁରୀ ବନ୍ଦ କରି ରଖିଦେଲି ।

ଓଃ ! ଜଣେ ସ୍ତ୍ରୀ କେତେ ଜଣଙ୍କୁ ପ୍ରେମର ଜାଲ ବିସ୍ତାର କରି ଉଲୁ ବନାଇ ପାରେ ! ମନେ ମନେ କହିହେଲି—ଏହି ସବୁରେ ତୋର ମତଲବ କଣ ?

ଏକା ସରଳା ନୁହେଁ । ଏହି ସଂସାରରେ ଶହ ଶହ ଏମିତି 'ସରଳା' ଅଛନ୍ତି । କାହାକୁ କାହିଁକି ତୁ ପ୍ରାଣରେ ମାରିଦବୁ ? ଯଦି ତୋର ଯାହାକୁ ପସନ୍ଦ ନ ହେଲା, ତୁ ଅନ୍ୟ କନ୍ୟା କର !

ତା ପରଦିନ ସକାଳୁ ଉଠି ଶରଦିନ ପାଇଁ ସେ ଘର ଛାଡ଼ି ଚାଲିଗଲି । ମୋର ବଦଳି ଅନ୍ୟ ଜାଗାକୁ କରିନେଲି ।

\+ + + +

ବର୍ଷକ ପରେ ଦିନେ ଅଫିସରେ କାମ କରୁଁ କରୁଁ, ଦୈନିକ 'ସମାଜ'ରେ ପଢିଲି—

**"........ନିଜର ସ୍ତ୍ରୀଙ୍କୁ ହତ୍ୟା କରିଥିବା ଅପରାଧରେ ଦୋଷୀ ସାବ୍ୟସ୍ତ କରି ଜଜ୍‌ସାହେବ ପୋଷ୍ଟମାଷ୍ଟର ଭୋଳାନାଥ ବାବୁଙ୍କୁ ଫାସିର ଦଣ୍ଡାଦେଶ ଦେଇଛନ୍ତି ।......"**

(କ୍ରମପୁଟ)

---

## କଣ୍ଟକେନୈବକଣ୍ଟକଂ

ଆଜି ବନ୍ଧୁମାନେ ମତେ ଦେଖିଲେ ବାଟରେ ଘାଟରେ ଗୁରୁଅଡ଼େ ଥଟ୍ଟା କରନ୍ତି । ବିଦ୍ରୂପ କରି କହନ୍ତି—'ପାଗଳ' । କିନ୍ତୁ କିଏ ପାଗଳ ? ମୁଁ ନା ସେମାନେ ? ଯିଏ ନାରୀର ପଣୀତ କାନନରେ ବନ୍ଦୀ ହୋଇ ଅଜୀବନ ଦାସ ପରି ରହି ପାରିଲା ସେ ନାଁ, ଯେ ନିଜକୁ ନାରୀର ବାହୁବନ୍ଧନୀରୁ ମୁକ୍ତ କରି ପାରିଲା, ସେ ? ଦୁନିଆ କହିବ ମତେ 'ପାଗଳ' । କିନ୍ତୁ ମୋ ବିବେକ, ମନ ଓ ପ୍ରବୃତ୍ତି ଗାଇ ଉଠିବ—'ନାଁ, ସେମାନେ 'ପାଗଳ', ସେମାନେ ଆତ୍ମହରା, ସେମାନେ କାମୁକ, ସେମାନେ ଚିରଦାସ, ସେମାନେ ଦୁର୍ବଳ ।' ଏହି କଥା ଆଜି ଭାବିଲେ, ମନେ ପଡ଼େ ସେହି ଶୈଶବର ସ୍ମୃତି, ଚଳଚ୍ଚିତ୍ରର ରୁପେଲି ପର୍ଦ୍ଦା ଉପରେ ନାଚି ଉଠେ ମୋର ଅଭିନବ ଦୃଶ୍ୟ ରାଜି । ବାଲ୍ୟର ସୁଖସୌଧ ଯେତିକି ବାସନା ଅନ୍ତରରୁ ଲିଭି ଯାଇଛି । ମୋ ଆଗରେ ଆଜି ସେ ହୋଇ ଉଠିଛି—ଅଳୀକ, ଅସତ୍ୟ ଓ ଅବୋଧ । ଆଜି ମୋର ଜୀବନ ହାହୁତାଶମୟ, ହାହାକାରମୟ ଓ କଣ୍ଟକମୟ । ଭବିଷ୍ୟତ ମୋର ଅନ୍ଧକାରାଚ୍ଛନ୍ନ । ଏଥିପାଇଁ ଦାୟୀ କିଏ ? ମୁଁ ନା ମୋର ଜନ୍ମଦାତା ? ଆଜି ସେହି ପୂର୍ବସ୍ମୃତି ଜାଗରୁକ ହୋଇ ଉଠିଲେ, ମଥା ଭିତରଟା ମୋର କଣ ହୋଇଯାଏ, ରାତିରେ ନିଦ ହୁଏ ନା, ପାଗଳଙ୍କ ପରି କଣ ଏଣୁ ତେଣୁ ଗୁଡ଼ା ମନ ଇଚ୍ଛା ବକିଯାଏ ।

+ + + +

ବା'ଘର ହୋଇଗଲେ । ମୁଁ ନାହିଁ କରୁଥିଲି । କିନ୍ତୁ ବୋଉ ବାବା ଜଗରଧରି ବସିଲେ—ଆମେ ବୁଢ଼ା ହୋଇ ଗଲୁଣି । ପାଣିଲା ତାଳ ଝଡ଼ିବାକୁ ଆଉ କେତେ ଦିନ ? ବହୁଟି ଆସିଲେ, ଘର ଦୁଆର କରିବୁ । ସୁଖରେ ରହିବୁ । ଆମେ ତ ସବୁଦିନେ ତୋ କତରେ ନ ଥିବୁ ।

ମୋଠୁଁ କିଛି ଜବାବ ନ ପାଇ ଫେର୍ କହିଲେ—ତୋ ବୋଉ ଓ ଖୁଡ଼ୀ ଦେଖି ଆସିଚନ୍ତି । ରୂପ ଯେମିତି ଗୁଣ ବି ତଦ୍ରୂପ । ଜନଷପାତ ଭଲ ଦିଆନିଆ କରିବେ ।—ଏଥର କିନ୍ତୁ ବାଧା ଦେଇ ପାରିଲି ନାହିଁ ।

• ତା'ପରେ ବା'ଘର ହୋଇଗଲା । ଚୌଠି ଓ ଅଷ୍ଟମଙ୍ଗଳା ଗଲା । ବନ୍ଧୁ ବାନ୍ଧବମାନେ ଅସ୍ତେ ଅସ୍ତେ ବିଦା ହୋଇଗଲେ । ବା'ଘର ଧୂମ ଓ ନିଶା ଛାଡ଼ିଗଲା ।

\+ \+ \+ \+

ପ୍ରଥମ ଦିନ ରାତି । ବିଛଣା ଠାରେ ଅବଶ ଦେହକୁ ମେଲି ଦେଇ ଦରବୁଜା ଆଖିରେ ଚାହିଁ ବହିଥାଏ—ପ୍ରାଣ ପ୍ରିୟାଙ୍କର ଶୁଭାଗମନ ଆଉ କେତେ ଡେରି । ଏତିକିବେଳେ ଦୁଆର ମୁହଁରେ କାଚ ଝଣଝଣର ଶବ୍ଦ ଶୁଣାଗଲା ।

ସେ ଆସିଲେ । ପାଖକୁ ଡାକିଲି । କଅଁଳ ହାତଟିକୁ ଧରି ନେଲି, କିନ୍ତୁ ଭିତରେ ଭିତରେ ଅନୁଭବ କଲି ଗୋଟାଏ ଶୀତଳ-ତାର ସ୍ପର୍ଶ । ତଥାପି ମନ ମୋର ଉନ୍ମାଦନା ଓ ମାଦକତାରେ ମାତୁଥିଲା । ପାଖକୁ ଟାଣି ଆଣି, ପଚାରିଲି ଗୋଟିଏ କଥା । ସେ କିନ୍ତୁ ନୀରବ । ସେ କର୍କୁ ମୁହଁଟି ବୁଲାଇ ବସି ରହିଲେ, ସତେ ଅବା ଅଭିମାନ କରି । ଭାବିଲି—ଲଜ୍ଜା ପରିଚ ନାହିଁ । ନୂଆ ଲୋକ

ବୋଲି ନାଜ କରୁଚ । ଆଉ ଦିଟା ଦିନ ଗଲେ ବଳେ ସେ ଖୋଲି ଭାଙ୍ଗିଯିବ ଯେ !

ଦ୍ୱିତୀୟ ଦିନ । ସେଇମିତ ନୀରବ, ନିରୁତ୍ତର ।

ତୃତୀୟ ଦିନ । ପଚ୍ଚରିଲି—କେତେ ଗୁଡ଼ା କଥା । ତା ଭିତରେ ଅନେକ ଗୁରୁତର ଭାବ ଲୁଚ ରହିଥିଲା—ନିଗୂଢ ଚେତଣେ ଆଖି ଠାରୁ ହସି ଉଠୁଥିଲା । ସେ କିନ୍ତୁ ଗୁଡ଼ାଏ ମାମୁଲି 'ହିଁ' 'ନାଁ'ରେ ମୋ ଜଟିଳ ସମସ୍ୟାଗୁଡ଼ିକର ସମାଧାନ କରିଦେଲା । ଆଶ୍ଚର୍ଯ୍ୟ ହେଲି । ମୁହଁରେ ତାର ଗୋଟାଏ ଅସ୍ୱାଭାବିକ ରେଖା ଅଙ୍କି ହେଇଗଲା—ପରିଲକ୍ଷିତ ହେଲା ପରିବର୍ତ୍ତନ । ମୋର ଏ ସବୁ ବୁଝି-ବାକୁ ଠିକଏ ବାକି ରହିଲାନି । ହୃଦୟରେ ମୋର ନିଶାର ଜୁଆର ଉଠୁଥିବାବେଳେ, ମନରେ ବିଦ୍ରୋହର ଅଗ୍ନି ଜଳି ଉଠିଲା । ହଠାତ୍ କହି ଉଠିଲି—ତୁମକୁ ବାହା ହେଇଥିଲି କଣ ଏମିତ କଣ୍ଢେଇ ପରି ବସାଇ ରୂପ ଦେଖି ମୋହିତ ହେବାକୁ ?

+ + + +

ଏହା ଭିତରେ ବର୍ଷୁଟେ ପାଣି ପରି ଗଡ଼ି ଗଲେଣି । ମାସେ ଛୁଟି ନେଇ ଘରକୁ ଗଲି ।

ସେ ଦିନ ଦେହଟା ଭଲ ନ ଥାଏ—କସମସ ହଉଥାଏ । ଶୋଇବା ଘରେ ଦରମେଲା ଆଖିରେ ପଡ଼ି ରହିଚ, ତକିଆ ପାଖରେ ଗୋଟାଏ ବହି ଉପରେ ନଜର ପଡ଼ିଗଲେ । ବହିଟା ଟାଣି ଆଣି ଖୋଲି ଦିଏଁ ତ—ଖଣ୍ଡେ ଚିଠି । ଅମୂଳଚୂଳ ଏକା ନିଶ୍ୱାସକେ ପଢ଼ିଗଲି । ତା'ପରେ ଏପାଖ ସେପାଖ ଓଲଟ ପାଲଟ କରି ପରୀକ୍ଷା କଲି—ଏ ହସ୍ତାକ୍ଷର କାହାର ? ମନେ ପଡ଼ିଗଲା ଅତରେ ସେହି

ପୁରୁଣା ସ୍କୁଲ୍ ଦିନର କଥା । ମୋ ସାଙ୍ଗ ଉମେଶ କଥା । ତା ହାତ ଅକ୍ଷର ତ ଠିକ୍ ଏଇମିତ । ପୁଣି ଭାବିଲି—ନାଁ, ସେ କାହିଁକି ଏଠିକି ଚିଠି ଦେବ ? ସ୍କୁଲ୍ ଛାଡ଼ିଲା ଦିନରୁ ସେ ତ ମତେ ବି ଦି ଗାର ଧାଡ଼ି ଲେଖେ ନା । ତେବେ ଏହାର ସନ୍ଧାନ କିଏ ଦେବ ?

ଗୋଟାଏ ଛଳନା କରି ସ୍ତ୍ରୀକୁ ମୋର ପଚାରି ଦେଲି—ତୁମ ଗାଁରେ ଉମେଶ ବୋଲି ଯେଉଁ ପିଲାଟି ଥିଲା, ସେ ବର୍ତ୍ତମାନ କଣ କରୁଛି ?

ସେ ମୋର ଉତ୍ତର ଦେବା ପୂର୍ବରୁ ମତେ ପ୍ରଶ୍ନକଲେ—ସେ ତୁମର କଣ ହୁଅନ୍ତି କି ?

କହିଲି—ସେ ପରା ମୋ ପିଲାଦିନର ସାଙ୍ଗ । ଅଭେଦ ପ୍ରୀତି, ଅଚ୍ଛେଦ୍ୟ ସ୍ନେହ ।

ସେ କହିଲେ—ସେ ବର୍ତ୍ତମାନ ବି. ଏ. ପାଶ୍ କରି ଘରେ ବସିଛନ୍ତି । ଚାକିରି ପାଇଁ ଯଥାସାଧ୍ୟ ଚେଷ୍ଟା କରୁଛନ୍ତି ।

ଏତିକିରେ ମୋର ସନ୍ଦେହ ତୁଟିଗଲା । ଜାଣି ପାରିଲି—ଆମ ଦୁହିଙ୍କ ଭିତରେ ହିମାଳୟ ଠିକ୍ ସଦୃଶ ଶତ୍ରୁ ରୂପେ ଦଣ୍ଡାୟମାନ ଏହି 'ଉମେଶ', ମୋ ପିଲା ଦିନର ସାଥୀ, ଯାଙ୍କୁ ସର୍ବସ୍ୱ ଦେଇ ମୁଁ ସ୍ନେହ କରୁଥିଲି । ସେଇ ପୁଣି ଆଜି ମୋ ସୁଖର ଅନ୍ତରାୟ ହୋଇ ଉଠିଲା ?—ନିୟତି ଠୋ ଠୋ ହସି ଉଠିଲା ।

ଉମେଶ ପାଖକୁ ଢେର ଦିନରୁ ଚିଠି ପତ୍ର ଦେଇ ନ ଥିଲି । ଏ ସୁଯୋଗ ଓ ସୁବିଧା ଉଣ୍ଡି, ଲେଖି ପଠାଇଲି—ଶୀଘ୍ର ଆସି ମତେ ଦେଖା କର । ଏ ମହତ କାର୍ଯ୍ୟର ଯୋଗ୍ୟ ପୁରସ୍କାର ତାଙ୍କୁ ଦେବାକୁ ପଡ଼ିବ ।

ସେ ଆସିଲା । ଅନେକ ବେଳ ଯାଏ ଧରେଁ ମୋ ଘରେ ବସି ଗୁଡ଼ାଏ ଏଣୁ ତେଣୁ ଫେସଫ କଲା । ସେ ସେହି ଦିନ ଚାଲିଯିବା ପାଇଁ ବସିଥିଲା—ବାଧା ଦେଇ କହିଲି, "ତୋର କି ଜରୁରୀ କାମଟାଏ ଅଛି ଯେ ଏମିତ ତରତର ହେଉଛୁ ? ଅକାଳେ ସକାଳେ ଦିନେ ଦେଖା ! ମୁଁ ଥିବାଯାଏ, ତତେ ରହିବାକୁ ପଡ଼ିବ ।" ନାନା ଅନେକ କଥାବାର୍ତ୍ତା ହେଉ—ଆନନ୍ଦରେ ଦିନଟା କଟି ଯାଉଥାଏ !

ବୁଝିଲି—ଏମାନଙ୍କ ଭିତରେ ଗୁପ୍ତ ପ୍ରଣୟର ଲତା ଅଙ୍କୁରିତ ହୋଇ ଉଠିଛି । ଏହାରି ମୋହରେ ପଡ଼ି, ସାମାନ୍ୟ ସ୍ତ୍ରୀଟାଏ ମତେ କୁଅଁଙ୍କ ପରି ଭୁଲେଇ ଦେବାକୁ ବସିଛି ? ସେ ସ୍ତ୍ରୀ ନୁହେଁ, ଅଜ—ବଟପୀ, କୁହୁକିନୀ, ମାୟାବିନୀ, ରାକ୍ଷସୀ !

ଦେଖିବା ତା'ର ବୁଦ୍ଧି କେଣେ ? ଜାଣନ୍ତି ନାଁ ସେମାନେ ଯେ ମୁଁ ପୁଲିସ କର୍ମଚାରୀ ? ମତେ ସାତଖଣ୍ଡୀ ମାଫ୍ । ସମୁଚିତ ପୁରସ୍କାର ନ ଦେଇ ପାରିଲେ, ମୋ ନାଁ ନୁହେଁ । ପ୍ରତିଶୋଧର ବହ୍ନି ଅନ୍ତରାତ୍ମା ମଧ୍ୟରେ ମୋର ରକ୍ତରେଖା ସଦୃଶ ହୁ ହୁ ହୋଇ ଜଳି ଉଠିଲା । ବାଧା ଦେଇ ପାରିଲି ନାହିଁ । ଉଠିଗଲି ଆଲମାରି ପାଖକୁ । ଟ୍ରଙ୍କଟା ଖୋଲି ଗୋଟାଏ ଟିଞ୍ଚର ବୋତଲ ବାହାର କଲି । ସେଥିରୁ ଟିକିଏ ଅନ୍ୟ ଗୋଟାଏ ଗ୍ଲାସରେ ଢାଳି ଦେଇ, ଟ୍ରଙ୍କଟି ବନ୍ଦ କରିଦେଲି ।

ଜୁରରମାନଙ୍କୁ ସ୍ତ୍ରୀକୁ ହେଲା ଜ୍ୱର ଥର୍ମୋମିଟରେ ଝୁରିଯି ଦିନ ବଢ଼ିଗଲା ୧୦୩ ଡ଼ିଗ୍ରୀ । ମତ୍ତ ଖୋଜେ ଯା, ବୈଦ୍ୟ ବଡ଼ାଏ ଡ଼ା । ଅଉ ଚେଷ୍ଟ କଲେ, ଚଳିବ ନାହିଁ । ସୁସମୟ ଉପସ୍ଥିତ । ମୁହୂର୍ତ୍ତେ ଚଳନ୍ତ କଲେ, ସାଗ ମରନାଟା ପଞ୍ଚାଇବାକୁ ପଡ଼ିବ '

ଠିକ ଭାତ ଅଧ ବେଳକୁ ଗିଳୁଅଛି ଧୀରେ କମ୍ପିତ ହସ୍ତରେ ବଢ଼ାଇ ଦେଲି ସ୍ତ୍ରୀ ହାତକୁ ଔଷଧ ବୋଲି କହି । ତା ହାତ ଥରି ଉଠିଲା । ପାଟି ପାଖକୁ ନେଇ ପାରିଲା ନାହିଁ । ଜବରଦସ୍ତି ପାଟିରେ ଢାଳି-ଦେଲି । ମିନିଟିକ ଭିତରେ ସବୁ ଶେଷ, ସବୁ ସଫା !

ହୁରି ପକାଇଲି ବୋଉକୁ । ସମସ୍ତେ ଗଦା ହୋଇଗଲେ । ସମସ୍ତେ କହିଲେ—ଗ୍ଳାନିରେ । ମୋର ଏ ଭିତର ଉଦ୍ଦେଶ୍ୟଟା କିନ୍ତୁ କେହି ଜାଣି ପାରିଲେ ନାହିଁ ।

ଏଇ ହାତରେ ତା ଚିତା ରଚନା କଲି । ଚିତାର ଲେଲିହ ଶିଖା ଲହ ଲହ ଜିହ୍ବା ବିସ୍ତାର କରି ଜଳି ଉଠିଲାଣି, ପାଗଳଙ୍କ ପରି ହସି ଉଠିଲି ! ଯୋଗ୍ୟ ପୁରସ୍କାର ! ମୋ ଆଖିରେ ଧୂଳି !

ବର୍ତ୍ତମାନ ଭାବନା ପଡ଼ିଲା—ଗୋଟାଏ ପଥ କଣ୍ଟକଶୂନ୍ୟ, ଅନ୍ୟଟି ? ଯିଏ ମୋ ଭାତ ଥାଳିରେ ଧୂଳି ଦେଇଥିଲା, ତାକୁ କଣ କିଛି ପୁରସ୍କାର ଦେଇ ପାରିବି ନାହିଁ ? କାହିଁକି ପାରିବି ନାହିଁ ?—ନିଶ୍ଚୟ ପାରିବି । ଯଉଁ ହାତ ନିଜ ସ୍ତ୍ରୀର ଜୀବନ ନବାକୁ ତିଳେମାତ୍ର କୁଣ୍ଠିତ କି ଅବଚଳିତ ହେଲା ନାହିଁ, ମୁହୂର୍ତ୍ତେ ବି ବିଳମ୍ବ କରି ପାରିଲା ନାହିଁ, ସେ କଣ ଏ ସାମାନ୍ୟ କାମଟା ବେଳକୁ ପଛେଇ ଯିବ ?—ନାଁ, କେବେହେଁ ନୁହେଁ ।

+ + + +

ଉଟମଣ ସ୍କଲାର୍ସି ପାଇ ନବ ବିବାହିତା ସ୍ତ୍ରୀ ସଙ୍ଗରେ ମୋ ବସା ପାଖରେ ଥାଏ । ସେ ଆସିଲା ଦିନଠୁଁ ବରାବର ତା ବସାକୁ ଯାଏଁ । ନାନା ଆଲୋଚନା ଚାଲେ ଆମ ଦୁହିଙ୍କ ଭିତରେ । ସେ ମୋ ପାଇଁ ମନ କଷ୍ଟ କରେ । ତା ଜୀବନ ବି କିପରି ନିସଙ୍ଗ ଓ ରିକ୍ତ ହୋଇ ଉଠୁଛି, ମୋ ପାଖରେ କହେ । ମୁଁ କିନ୍ତୁ କାନଟା ଏଆଡ଼େ ରଖି ଭାବୁଥାଏ—ସୁଯୋଗ ଆସିଛି, ଛାଡ଼ିବାକୁ ହେବନି ।

ସେ ଅଧିକାଂଶ ଦିନ ଗସ୍ତରେ ଯାଏ । ଯିବାବେଳକୁ ମତେ କହିଯାଏ, ହେମର ଭଲ୍ ନେଉଥିବୁ, ଆମ ବସାକୁ ବରାବର ଆସୁଥିବୁ ।

ଦିନେ ରାତିରେ ହେମ ସାଙ୍ଗରେ ବସି କ'ଣ ଗୁଡ଼ାଏ ଗପୁ ଗପୁ ଏଗାରଟା ବାଜିଗଲା । ବାହାରିଲି ବସାକୁ ଯିବାପାଇଁ । ହେମ ମତେ ବାଧାଦେଇ କହିଲା—ସେଠି କିଏ ଅଛି ଯେ ଯିବ ? ଆଜି ଏଇଠି ଦି'ଟା ଖାଇଦେଇ ଶୋଇପଡ଼ । ମୁଁ ବିଛଣା କରିଦିଏଁ ।

ବାଧାଦେଇ କହିଲି—ନାଁ, ଆଜି ଦେହଟା କାହିଁକି କେଜାଣି ଭଲ ଲାଗୁନାହିଁ । କାଲି ଆସିବି । —ଏହି ବାହାନାରେ ବସାକୁ ଫେରିଲି । ମନରେ କିନ୍ତୁ ପ୍ରତିହିଂସାର ବହ୍ନିଟା ଦପ୍ ଦପ୍ କରି ଜଳି ଉଠୁଥାଏ । ଶୀକାର ହାତକୁ ଆସିଛି । ଛାଡ଼ିଲେ, ଆଉ ସୁଯୋଗ ମିଳି ନ ପାରେ ।

ତା ପରଦିନ ସନ୍ଧ୍ୟାରେ ଖଟ ଉପରେ ବସିଛି । ହେମ ଆସି ମୋ ପାଖକୁ ଲାଗି ବସି ପଡ଼ିଲା । ଭରା ଯୌବନ, ଢଳ ଢଳ ରୂପ । ମନ ପୁଲକିତ ହୋଇ ଉଠିଲା । କି ଗୋଟାଏ ଉତ୍ତେଜନା, ଉନ୍ମାଦନାର ମୋହରେ ତାକୁ ଭିଡ଼ି ଧରିଲି ବାହୁ ପାଶରେ । ସ୍ନେହରେ ଡାକି ଦେଲି । ଶରୀର ମୋର ଶିହରି ଉଠିଲା । ଏତେ-ଦିନେ ଏ ଅପୂର୍ବ ପରଶ ଲାଭ କରି, ମନ ଇଚ୍ଛା ଉପଭୋଗ କଲି ଯୌବନର ମାଦକତା, ମେଣ୍ଟାଇ ନେଲି ବହୁଦିନର ସଞ୍ଚିତ ଯୌନ-କ୍ଷୁଧା । ସେ ବି ଖୋଜୁଥିଲା ସେୟା । ଦିହେଁ ପାଗଳ ଓ ଅଧୀର ହୋଇ ଉଠିଲୁ । ସେଇ ଦିନରୁ ମୁଁ ଉପେନ୍ ନ ଥିବାବେଳେ ରାତିଟା ସେଇଠି କଟେଇବାକୁ ଟିକିଏ ସଙ୍କୋଚ ବୋଧ କରେ ନାହିଁ ।

ସେ ତାର ଅନ୍ତର-ବେଦନା ଓ ବ୍ୟଥା ମୋ ନିକଟରେ ଜଣାଇ ଦେଲା । ମୁଁ ବି ମୋ ଜୀବନ-ଇତିହାସ-ପେଡ଼ି ଖୋଲି

ଦେଲ୍ ତା ଅଗରେ । କହୁଲ୍—ଆମର ଏ ଅବାଧ ମିଳନକୁ ତ ସମାଜ ସ୍ୱୀକାର କରିବ ନାହିଁ ।

ସେ ହଠାତ୍ କହି ଉଠିଲା—"ମୁଁ ମାନେ ନା ସଂସାରର ଏ ବନ୍ଧନ ନିଗଡ଼କୁ । ମୁଁ ମୋ କ୍ଷୁଧା ନିବାରଣ କରିବାକୁ ଚାହେଁ । ଯେ ମୋ ହୃଦୟର ପୂଜା ଦେଇ ପାରିଲା, ସେ ପ୍ରକୃତ ପୂଜାର ଅଧିକାରୀ ଓ ତାର ପୂଜା ଗ୍ରହଣ କରିବାର ହକ୍ ଦାବୀ ଅଛି ।—"
ମୁଁ କିଛି କହି ପାରିଲି ନାହିଁ ଯେଉଁଏ ।

ତା'ପରେ ନିବିଡ଼ ଆଲିଙ୍ଗନରେ ବାନ୍ଧି ରଖି କହିଲି—"ସତେ କ'ଣ ତୁମେ ମତେ ଭଲ ପାଅ ?"

ସେ କହିଲା—"ତୁମ ଅନ୍ତରାତ୍ମାକୁ ପଚାର । ସେହି ସାକ୍ଷୀ ।"

ମୁଁ କହିଲି—"ତାହେଲେ ଗୋଟେ କାମ କରି ପାରିବ ?"

ସେ ପଚାରିଲା—"କଣ ?"

ମୁଁ କହିଲି—"ଯେ ଆମ ଦୁହିଁଙ୍କର ଏ ସମ୍ଭୋଗୀୟ ରୂପେଲି ଜୀବନ-ପଥରେ କଣ୍ଟକ ରୂପେ ଦଣ୍ଡାୟମାନ, ତାକୁ ଦୂର କରି ପାରିବ ?"

ତା ଦେହ ଥରି ଉଠିଲା । ଚକ୍ଷୁରେ ଏକ ବିଦ୍ୟୁତର ରେଖା ଖେଳିଗଲା । ଧିରେ ଧିରେ କ୍ଷୀଣ ସ୍ୱରରେ ସେ କହିଲା—"ନାଁ ।"

ମୁଁ ତତ୍‌କ୍ଷଣାତ୍ କହି ପକାଇଲି—"ତାହେଲେ ତୁମେ ମତେ ଭଲ ପାଅ ନା ?"

ସେ କଣ ବୁଝିଲା କେଜାଣି ତତ୍‌କ୍ଷଣାତ୍ ସଦମ୍ଭରେ କହି ପକାଇଲା—"ହଁ, ପାରିବି । କାହିଁକି ବା ନ ପାରିବି ? ମୋ ହୃଦ-ଦେବତାଙ୍କର ଏ ସାମାନ୍ୟ ଓ ତୁଚ୍ଛ ଅନୁରୋଧଟା ଏତିକି ପାରିବି ?

ଯେ ମତେ ବିନା ବାକ୍ୟ ବ୍ୟୟରେ ସମାଜର ନିଷ୍ଠୁର ନିର୍ଯାତନା ଓ ନାଲି ଆଖିକୁ ନ ଡରି, ଅକାତରେ ଅକୁଣ୍ଠିତ ଚିତ୍ତରେ ତାଙ୍କ ହୃଦୟ ସାଙ୍ଗରେ ମିଶାଇ ପାରନ୍ତି ଓ ସେ ଏହି ଶୁଷ୍କ ମରୁରେ ମତେ ନିଜ କୋଳକୁ ଟାଣି ନେଇ ଅଭୟ ଓ ଆଶ୍ରୟ ଦେଇ ପାରନ୍ତି, ତାଙ୍କର ଏ ସାମାନ୍ୟ ଉପରୋଧଟା ରଖି ପାରିବି ନାହିଁ ? ସ୍ତ୍ରୀ କ'ଣ ଏତେ ଦୁର୍ବଳ ? ଏତେ ଭୟାତୁ ?"

ତା'ପରେ ପକେଟରୁ ପୁଡ଼ିଆଟିଏ କାଢ଼ି ତା ହାତକୁ ବଢ଼ାଇ ଦେଇ କହିଲି—"ସେ ଫେରିଲେ, ତାଙ୍କୁ ସରବତ ସାଙ୍ଗରେ···।"

\+ + + +

ସାତ ଦିନ ପରେ ଉମେଶ୍ ଫେରିଲା । ଭୟଙ୍କର ଜର । ଡାକ୍ତର ଆସିଲେ । ତନ୍ନ ତନ୍ନ କରି ଶରୀର ପରୀକ୍ଷା କରି ମତ ଦେଲେ ।—ସାଙ୍ଘାତିକ ବେରାମ, ବଞ୍ଚିବା କଷ୍ଟ ।—ସେତେବେଳେ ହୃଦୟ ମୋର ତାଚ୍ଛଲ୍ୟର ଗୁପ୍ତ ହସ ହସି ବିଦ୍ରୂପ କରି ଉଠିଲା ।

ସତକୁ ସତ, ଦି ଦିନ ପରେ ରାତି ବାରଟାବେଳେ ଉମେଶ୍ ତୃଷା ନିବାରଣ ପାଇଁ ପାଣି ମାଗିବାରୁ, ହେମ ଗ୍ଲାସଟି ବଢ଼େଇ ଦେଲା । ସେ ଏକା ନିଶ୍ବାସକେ ଏକା ଢୋକକେ ସେତକ ପିଇ-ଦେଲା । ତା ପରେ ?—ସେଇ ଅମାବାସ୍ୟାର ଅନ୍ଧକାରମୟ ଗଭୀର ରାତିରେ ସବୁ ଶେଷ—ଠିକ୍ ମୋ ସ୍ତ୍ରୀ ପରି !

ଯଉଁ ହାତରେ ତାର ପ୍ରଣୟୀକୁ ଚିତାରେ ଶୁଆଇ ଦେଇ-ଥିଲି, ସେହି ହାତରେ ଏକୁ ବି ସେହି ଅଗ୍ନିରେ ଜାଳି ପାଉଁଶ କରି ଦେଲି । ମୋ ବିରୁଦ୍ଧରେ ଗୁପ୍ତ ଷଡ଼ଯନ୍ତ୍ର କରିବାର ଯୋଗ୍ୟ ପୁରସ୍କାର । ଏ ମିଛ ଦୁନିଆଟାରେ ମୋ ଅନ୍ତରର ଗୋପନ ବାର୍ତ୍ତା

କେହି ଜାଣନ୍ତି ନାହିଁ । କେବଳ ଜଣେ ଜାଣେ—ତାର ଅଭିଶାପ ଫଳରେ ଆଜି ମୁଁ ମୂର୍ଖ, ନିର୍ବୋଧ, ପାଗଳ—ଯା କିଛି ତୁମେ କୁହ । ମନପୁଣି ପାଗଳ ହସଟାଏ ହସି, ଫେରିଲି ରକ୍ତ ହସ୍ତରେ ଘରକୁ ।

\+ + + +

ଆଜି ଆମ ପଥରେ ଆଉ କଣ୍ଟା ନାହିଁ—ଆଜି ଆମେ ନିର୍ଭୟ, ସ୍ୱାଧୀନ !

ହେମ ମତେ ସ୍ୱାମୀଠୁଁ ବଳି ସ୍ନେହ କରେ, ଭଲ ପାଏ । ନିଜେ ମୋ ତତ୍ତ୍ୱ ସବୁ ବୁଝେ । ମୋ ପାଇଁ ନିଜେ ରାନ୍ଧେ ଓ ନିଜ ହାତରେ ମତେ ଖାଇବାକୁ ଦିଏ ।

ମୁଁ ତା ବିନିମୟରେ ମୋର ସବୁଠାରୁ ଶ୍ରେଷ୍ଠ ଉପହାର ପ୍ରେମର ଅର୍ଘ୍ୟ ଦବାକୁ ଭୁଲେ ନାହିଁ ତାକୁ ।

ଆଜି ଆମେ ରୂପର ମୋହରେ ଓ ଯୌନ-ପିପାସା ନିବାରଣ କରିବାରେ ପାଗଳ, ଉନ୍ମାଦ !

ସେ ମୋ ବାହୁ-ପାଶରେ ଛନ୍ଦି ହୋଇଥିବା ବେଳେ ତା ଗୋଲାପି ଓଠରେ ସନ୍ଧ୍ୟ ଚୁମ୍ବନଟିଏ ଆଙ୍କି ଦେଇ କହେ—"ଆଜି ଆମେ ମୁକ୍ତ । ଆମକୁ ବାଧା ଦବାକୁ କେହି ନାହିଁ । ମନ ଇଚ୍ଛା ଯୌବନ ଉପଭୋଗ କରିବା ।"

କଥା ସରିଲେ ବଡ଼ ପାଟିରେ 'ହୋ' 'ହୋ' କରି ହସଟାଏ ହସି ଦେଇ ବିଛଣାରେ ଢଳିପଡ଼େ । କିନ୍ତୁ ରାତରେ ଆଖିକୁ ଜମା ନିଦ ଆସେ ନା । ଅପଲକେ ମନେ ପଡ଼ିଯାଏ ପୂର୍ବ ସ୍ମୃତି । ଗୋଟି

ଗୋଟି ହୋଇ ଚକ୍ଷୁ ସାମନାରେ ଭାସିଯାଏ ଅତୀତର ଜ୍ୱଳନ୍ତ ଘଟଣାବଳୀ ।

ମଥା ଭିତରଟା ମୋର କ'ଣ ହୋଇଯାଏ । ଏ ଛୀଅଳି-ରୋଗଟା ମୋର କାହୁଁ ଧରିପାରେ ନା କି ଜାଣି ପାରେନା ହେମ । ସେ ଯେ ସରଳା । ତା ପ୍ରେମ ଯେ ପ୍ରକୃତ ପ୍ରେମ । ସେଥିରେ ନା ଅଛି ଅସ୍ୱଳତା, ନା ଅଛି ଅବର୍ଜନା—ବିଶୁଦ୍ଧ, ତଟକା ଓ ଶାନ୍ତି ।।

( ସତ ଘଟଣା )

—ରସ୍ମୂଗଙ୍ଗା—

---

# ସୋହାଗ

ମୁଷା ଜାତରେ ପାଣ। ସାଧୁବାବୁଙ୍କ ନୌକର ସେ। ପଖାଳ କଂସେ ଦୁଇଁ ସାରି ଗୋରୁ ମାଠକୁ ଚରେଇବାକୁ ନେଇଯାଏ। ବେଳ ବୁଡ଼କୁ ପୁଣି ତାଙ୍କୁ ଅଡ଼େଇ ଘରକୁ ଫେରି ଆସେ। ବାବୁଙ୍କ ଘରୁ ଯା' ମଜୁରି ମିଳେ, କଷ୍ଟେ ସଷ୍ଟେ ସେଇଥିରେ ଦିନଟା ତାର କଟେଇ ଦିଏ। ଚିନ୍ତା କି ଦାବି ତାର କିଛି ନ ଥାଏ। ଗୋରୁଗୁଡ଼ଙ୍କୁ ପଡ଼ିଆରେ ଛାଡ଼ି ଦେଇ, ଖଣ୍ଡେ ଦୂରରେ ଗୋଟେ ଝାଙ୍କୁଲ ବରଗଛ ମୂଳରେ କାନିଟି ପାରି ଶୋଇଯାଏ।

ଘରେ ତାର ବୁଢ଼ୀ ମା'ଟି। ବଳ ବୟସ ହଟିଲାଣି। ନିପାଉଗ ହେଇ ଗଲାଣି। ସେଇଥିରେ ମୁଷାକୁ ଦିଠା ଫୁଟେଇକି ଦିଏ। ଝୁଲ୍ଲଠ ମାଟିର ପଞ୍ଜାଟି। ଦାଣ୍ଡରେ ତାଟି ଖଣ୍ଡେ ଡେରା ହେଇଚି। ଛଠା ବାଡ଼ କାନ୍ଥ। ଠେଲି ଦେଲେ ଆର ପାଖକୁ ଢଳି ପଡ଼ିବ। ଗୋଟିଏ ନାଁକୁ ଘର। ପାଟେଣୀ ରନ୍ଧା ହୁଏ। ଆଉ ପାଖଟିରେ ମୁଷା ଓ ତା ମା ଶୁଅନ୍ତି। ଘରେ କଉଁ କାଳରୁ ମୁରୁଣୀ ବାଉଁଶ ପେଡ଼ିଟେ, ଭଙ୍ଗା ନଳଠେଣିଟେ, ପିତଳ ଲୁବାରଟିଏ, ଭଙ୍ଗା ଖଟେଣ୍ଡି, କଳେଇ ଥାଳି ପଟେ, କୁରାଢ଼ିଟେ, କତା ଖଣ୍ଡେ, କୁଣ୍ଡଟେ, ଗୋରୁଅଡ଼ା ପାଞ୍ଚଣଠା ଏଣେତେଣେ ଘର ସାରା ବିଞ୍ଛୁଡ଼ି ହେଇ ପଡ଼ିଚି। କାନ୍ଥକୁ ଡେରା ହେଇଚି ମୁଷ୍ଟିଲିଆ ଠେଙ୍ଗାଠା। ଖୁଡ଼ହାଣ୍ଡି ଓ

କରେଇ ଖଣ୍ଡିକ ଚୁଲି ପାଖରେ ଥୁଆ ହୋଇଚି । ଅଉ ସ୍କୁଲରେ ଝୁଲୁ ହୋଇଚି ଖାଲି ଲୁହା ପିଞ୍ଜରାଟା ।

ପିଞ୍ଜରାଟି ତା ବାପ ଅମଳରେ ଥିଲା । ମୁଷାକୁ ଛଅ ବରଷ ବେଳେ, ତା ବାପ କଉଁଠୁ ଗୋଟେ ମଇନା ଧରି ଆଣି ସେଇ ପିଞ୍ଜରାରେ ପୋଷିଥିଲା । ମୁଷା ମଇନାକୁ ଦେଖି ହସି ହସି ଗଡି ଯାଉଥିଲା, ବେଳେ ବେଳେ କାନ୍ଥକୁ ଧରି ଠିଆ ହୋଇ ମଇନାକୁ ଧରିବାଲାଗି ତା ଛୋଟ ହାତ ବଢ଼ାଉଥିଲା, ଅଉ ମଇନା ପିଞ୍ଜରାରେ ଥାଇ ବି ତା ସାଙ୍ଗରେ ଖେଳୁଥିଲା । କିନ୍ତୁ ଦି ଛଅ ମାସ ଭିତରେ ପିଞ୍ଜରା ଖାଲି ହୋଇଗଲା—ମଇନାକୁ କାଢ଼େ ସାପ କାମୁଡ଼ି ଦେଲା । ଫେର୍ ଦି ବରଷ ପରେ ତା ପଛେ ପଛେ ମୁଷା ବାପା ବି ଗ୍ଲୁଲି-ଗଲେ । ଘର ବିଲ୍‌କୁଲ୍ ଖାଲି ପଡ଼ିଲା, ସବୁବେଳେ ଖାଁ ଖାଁ ଗୋଚଡ଼େଇଲା । ସେଇ ଦିନଠୁଁ ପିଞ୍ଜରାଟି ଖାଲି ପଡ଼ିଚି । ମୁଷା ଘରକୁ ଫେରିଲେ, ଆଗ ପିଞ୍ଜରା ଆଡ଼କୁ ଥରେ ଗ୍ଲୁହେଁ । ତାର ଇଚ୍ଛା—କଉଁଠୁ ଗୋଟେ ମଇନା ଆଣି ପୁଣି ପିଞ୍ଜରାରେ ରଖିବ, କିନ୍ତୁ ମଇନା କଉଁଠୁ ମିଳିବ ? ଦିନ ଭିତରେ ତ ଖଟି ଖଟି ଜାନ୍ ଯାଉଚି, ନିଶ୍ୱାସ ମାରିବାକୁ ଦଣ୍ଡେ ହେଲେ ଫୁରସତ୍ ନାହିଁ । କିଣିବାର ଶକ୍ତି ନାହିଁ । ଏହି ଭବିଷ୍ୟତ ଆଶାରେ, ମଇନାର ପିଞ୍ଜରାଟି ଖାଲି ସ୍କୁଲରେ ଲଟକା ହୋଇଥାଏ ।

ମୁଷା ମା ଅଉ ଘର ପାଇଠି ପଡରି କରି ପାରୁନାହିଁ, ଦେଖୁ ଦେଖୁ ବୟସ ଗଲା, ବାଳ ପାଚିଲା, ବୁଢ଼ୀ ହେଲା । ସେ ମୁଷାକୁ ଖୋଇ ପେଇ ବଢ଼େଇ ଏଡ଼େ ବଡଟେଠୁଁ କେଣ୍ଡାଟେ କଲାଣି । ତା ତପସ୍ୟା ଓ ସାଧନା ବଳରୁ ମୁଷା ଆଜି ଏଡ଼େଟେ ହୋଇଚି—ଦି ପଇସା ଆଜି କମେଇ ପାରୁଚି । ତାର ସବୁବେଳେ ମନର ଇଚ୍ଛା—ବୁଢ଼ୀ ହେଲା, ପାକଲା ତାଳ ଝଡ଼ିବାକୁ କେତେ ଡେରି ?

ମୁଷା ହାତକୁ ଦୁ'ହାତ ହେଲେ ତା ଦୁଃଖ ଯିବ, ବହୂ ପୁଅଙ୍କୁ ଦେଖି ସୁଖରେ ତା ଜୀବନ ବାହାରିଯିବ ।

କେବେ କେବେ ବୁଢ଼ୀ ସ୍ୱପ୍ନରେ ଦେଖେ—ମୁଷାକୁ କୋଳରେ ଶୁଆଇ ହଳଦୀ ଲଗେଇ ଦଉଛି, ତା ଆଖିରେ କଜଳ ଦଉଛି, ମଥାରେ ତେଲ ପକଉଛି । ସୁନ୍ଦରୀ ବହୂଟିଏ ଆସିଛି, ପୁଅ ବୋହୂ ଦୁଆର ମୁହଁରେ ଛିଡ଼ା ହୋଇ କି କଥା କହୁଛନ୍ତି ! ସେ ଆନନ୍ଦରେ ଦେଦେ ହୋଇ ଯାଉଛି, ହସି ହସି ତାଙ୍କ ପାଖକୁ ଯାଉଛି—ଏତିକିବେଳେ ତା ନିଦ ଭାଙ୍ଗିଯାଏ, ଆଖି ଖୋଲେ, ଦେଖେ ସବୁ ସ୍ୱପ୍ନ, ଅସତ୍ୟ ଓ ଅଲୀକ; ମିଥ୍ୟା, ମାୟା, ଛଳନା । ଫେର୍ କଡ଼ ଲେଉଟାଇ ସେଇ ଦରମୁଦା ଆଖିରେ ପଡ଼ିରହେ ।

ଏହିମିତି ଦୁ'ଟା ବରଷ ପାଣି ପରି କୁଆଡ଼େ ଗଡ଼ିଗଲା । ମୁଷା ଅଠର ବର୍ଷର ଚେଙ୍ଗ୍ରିଆ ଯୁଆନ । ବୁଢ଼ୀ ମା ତାର ନିରାଶ ଓ ହତାଶ ହୋଇ ବସି ଯାଇଛି । କାଲି ନାଁ ମୁଷା ତା ଆଗରେ ନଙ୍ଗଳା ହୋଇ ଖେଳୁଥିଲା, ଆଜି ସେ ମରଦ, କଳା ଦାଢ଼ି ମୁହଁକୁ ଢାଙ୍କି ପକାଇଲାଣି ! ତାର ବାହାଘର କିମିତି ହେବ ? କେଉଁଠି ଗୋଟେ ଗରିବ ଘରର ଝିଅଟେ ମିଳି ଯାଆନ୍ତା ଯଦି, ସେ ମୁଷା ସାଙ୍ଗରେ ଜୁଟି ଦିଅନ୍ତା । ଘରେ ବହୂ ଦେଖନ୍ତା—ବହୂ ଯିମିତି ହଉ, ଯେତେତ ହେଲେ ତ ବହୂ, ଘର ଝିଅ ପରି ତ । ସେଥିରେ କ'ଣ ଅଛି ? ଦେଖୁଁ ଦେଖୁଁ ବୟସ ଢଳି ଯାଉଛି ।

ମୁଷା ଯେତେବେଳେ ବାବୁଙ୍କ ଗୋରୁ ଚରଉଥିଲା । ଗାଁଠୁ କିଛି ଦୂରରେ ନଈ ସେପାରି ମାଠକୁ ସେ ଗୋରୁଙ୍କୁ ଅଡ଼େଇ ନେଇଯାଏ । ଏହି କାମ କରିବା ଆଜକୁ ପାଞ୍ଚ ବର୍ଷ ହୋଇଗଲା । ସାଙ୍ଗରେ ପାଖ ଗାଁର ଗୋଟେ ଝିଅ ବି ଗୋରୁ ଚରେଇବାକୁ ଆସି

ତା ଏପାଖ ସେପାଖରେ ନଅର ପଅର ହୁଏ । ମୁଷା ପାଖରେ ଆସି ବେଳେ ବେଳେ ବସେ, ବସି ତେର ଅଡ଼ର ଗପ ପକାଏ । ଦହେଁ ହସି ହସି ଗଡ଼ି ଯାଆନ୍ତି ।

ସେ କେବେ କହେ—"ଭଗବାନ କାହିଁକି ଘାସର ସୃଷ୍ଟି କରିଛନ୍ତି ?"

ଟିକିଏ ଭାବି ମୁଷା ଉତ୍ତର ଦିଏ—"ଜୀବଜନ୍ତୁଙ୍କ ପାଇଁ ।"

ସେ ପଚାରେ—"ଘାସ କାହିଁକି ଜୀବଜନ୍ତୁଙ୍କ ପାଖକୁ ଆପେ ଆପେ ଚାଲି ଯାଉନାହିଁ ? ଦିନ୍ ଆମକୁ କାହିଁକି ଏଠିକି ଆସିବାକୁ ପଡ଼ୁଛି ?"

ଗମ୍ଭୀର ହୋଇ ମୁଷା ଜବାବ ଦିଏ—"ଶୋଷ ପାଣି ପାଖକୁ ଯାଏ, ପାଣି କେବେ ଶୋଷ ପାଖକୁ ଯାଏ ନାହିଁ ।"

"ତାହେଲେ ଆମେ ତୁମେ କାହିଁକି ଘାସ ଖାଉନାହୁଁ ?"—ସେ ପ୍ରଶ୍ନ କରେ ।

ଟିକିଏ ଥକା ମାରି ମୁଷା କହୁଉଠେ—"ମୁଁ ତ ଘାସ ଖାଏ ନାହିଁ, ତୋର ଯଦି ମନ ହଉଛି ଖାଉନୁ ?"—ଏତକରେ ଦହେଁ ହସି ଉଠନ୍ତି । ସେ ଝିଅଟି କିଏ ନାଁ—ଯମୁନା ।

ଏଇ କେଇ ଦିନ ହେଲା ଯମୁନା ଗୋରୁ ନେଇ ଆଉ ଆସୁ ନାହିଁ, ତାର ପତା ନାହିଁ, ଖୋଜ୍ ଖବର ନାହିଁ, କଥା କଣ ? ମୁଷା ଭାବି ପାରେନା ତାର କ'ଣ ହେଲା । ସେ ଦିନେ ତାର ଜଣେ କଉଁ ଜଣାଶୁଣା ଲୋକଠୁଁ ଶୁଣିଲା—ଯମୁନା ତା ମା ବାପଙ୍କ ସାଙ୍ଗରେ ଭାରି ନଡ଼ୁଛି । ସେ ଚାହୁଁଛି, ଅଉ କାହା ସାଙ୍ଗରେ ବାହା ନ ହୋଇ ତାକୁ ମୁଷା ସାଙ୍ଗରେ ବାହା ଦିଅନ୍ତୁ । କିନ୍ତୁ ମୁଷା ପାଖରେ ପଇସା ନାହିଁ ବୋଲି ତା ବାପ ମା ମଙ୍ଗୁ ନାହାନ୍ତି ।

ଏଣେ ମୁଷା ଉଦାସ ମନରେ ଜନସାଗ୍ର ଭିତରେ ବୁଲି ବୁଲି କ୍ଳାନ୍ତ ହୋଇ, ଗୋରୁଙ୍କୁ ନେଇ ଘରକୁ ଲେଉଟୁଛି, ଦେଖିଲି— ଗୋହିରୀ ପାଖ ବଡ଼ କଅଁଳୁଦା ମୂଳରେ ଛିଡ଼ା ହୋଇଛି ଯମୁନାର ବାପ। ମୁଷାକୁ ଦେଖି ସେ କହିଲି—"ତୋ ମା ପାଖକୁ ଏଇକ୍ଷଣି ଯାଇଥିଲି। ଏହି ମାସରେ ତୋ ବା'ଘର ହବ।"

ଘରକୁ ଫେରି ମୁଷା ସତକୁ ସତ ଦେଖିଲା—ତା ମା ଘର ଦୁଆର ସବୁ ଲିପା ପୋଛା କରୁଛି, ତାର ଆନନ୍ଦର ସୀମା ନାହିଁ। ମୁଷାକୁ ଦେଖି ସେ କହିଲା—"ଯା, ବାବୁଙ୍କ ପାଖରୁ ବର୍ତ୍ତନ ମାଗି ଆଣ ଯା। ତିନି ମାସର ବର୍ତ୍ତନ ବାକୀ ଅଛି। ଯା, ଜଲ୍‌ଦି ଯା, ଆଉ କେତୁଟା ଦିନ ରହିଲା ଯେ!"

ମୁଷାର ବା'ଘର ହୋଇଗଲା। ଶାଶୁ ଶଶୁର ଆପଣା ସଙ୍ଗ୍ୟ ଅନୁସାରେ ଯାହା ଜାନି ଯୌତୁକ ଦେଲେ। ମୁଷାର ନବ ବିବାହିତା ଭାର୍ଯ୍ୟା ଯମୁନା ବାପଘରୁ ଆସିବାବେଳେ ସାଙ୍ଗରେ ଗୋଟେ ମଇନା ଆଣିଥିଲା। ସେ ବାଉଁଶ ପିଞ୍ଜିରିରେ ଥିଲା। ମୁଷାକୁ ବାଉଁଶ ପିଞ୍ଜିରି ପସନ୍ଦ ହେଲା ନାହିଁ। ତାର ପୁରୁଣା ଲୁହା ପିଞ୍ଜିରାଟା ଖାଲି ପଡ଼ିଥିଲା—ସେ ତାକୁ ସେଇଥିରେ ରଖିଲା।

ଦିନ ଗୁଡ଼ିକ ସୁଖରେ ବିତିବାକୁ ଲାଗିଲା। ପିଣ୍ଡାରେ ବସି ଦି ପରାଣୀ ଦୁଃଖ ସୁଖ ଗପ ସପ ହୁଅନ୍ତି। ମଝିରେ ମଝିରେ ତାଙ୍କ କଥାରେ ବାଧାଦେଇ ମଇନା ଡାକିଉଠେ, ଯେମିତି ଦି ଜଣଙ୍କ କଥା ସେ ବୁଝି ପାରୁଛି। ଯମୁନା ମଇନାକୁ ଗାଳିଦିଏ, ମଇନା କିନ୍ତୁ ଆହୁରି ବଡ଼ ପାଟିରେ ଚିତ୍କାର କରି ଉଠେ। ତା ପରେ ମୁଷା ଉଠି ତା ପାଖକୁ ଚାଲିଯାଏ ରାଗରେ, ସେ ଆଉ ପାଟି ମୁଣ୍ଡ କରେ ନା, ଚୁପ୍ କରି ବସି ରହେ। ମଇନା ମୁଷା ଓ ଯମୁନା ଉଭୟଙ୍କର ଆଦରର ଧନ ଥିଲି।

ମୁଷାକୁ ଭଗବାନଙ୍କ କୃପାରୁ ଆଜ ଭଦ୍ରକ ଷ୍ଟେସନରେ ଖଣ୍ଡିଏ ଖଲାସି ପାଇଟି ମିଳିଛି । ମାସକୁ ବର୍ତ୍ତନ ବାର ଟଙ୍କା । ବାବୁଙ୍କ ତିନିଟଙ୍କିଆ ନୌକରୀ ଆଜି ସେ ଛାଡ଼ି ଦେଇଛି । ଦିନ ସାରା କାମ କରେ । ସନ୍ଧ୍ୟାବେଳକୁ ଡିଉଟି ପରେ ଷ୍ଟେସନରୁ ଘରକୁ ପଳାଇ ଆସେ । ମଇନାକୁ ଥରେ ଡାକିଦିଏ । ତା ପରେ ତା ଆଖି ଯମୁନାକୁ ଖୋଜିଅଡ଼େ ହନ୍ତାଲ ପକାଏ । ମୁହୂର୍ତ୍ତେ ଯମୁନାର ଦେଖା ତେଡ଼ି ହୋଇଗଲେ, ମୁଷାର ସାରା ବ୍ରହ୍ମାଣ୍ଡ ପ୍ରଳୟ ହୋଇଯାଏ, ତାକୁ ଦଶଦିଗ ଅନ୍ଧାର ମାଲୁମ ହୁଏ ।

ଏହିମିତି ଛ'ଟା ମାସ ବିତିଲେ । ବୁଢ଼ୀ ମା'ଟି ଘରର ଗୋଟିଏ କଣରେ ପଡ଼ି ରହିଥାଏ, ଆଉ ମୁଷା-ଯମୁନାର ମଧୁର ବାକ୍ୟାଳାପ ଶୁଣି ଖୁସି ହୁଏ । ମୁଷାବି ଭାରି ଖୁସିହୁଏ । କାହିଁକି ବା ନ ହବ ? ତା ଘର ଗୁଲ୍‌ଜାର, ପାଞ୍ଜିରି ଗୁଲ୍‌ଜାର, ନିଜ ଦିଲ୍‌ ବି ଗୁଲ୍‌ଜାର ! ତା ପକ୍ଷରେ ଆଜ ସାରା ଦୁନିଆଁଟା ଗୁଲ୍‌ଜାର । ଏହିପରି କେଇ ମାସ କଟି ଦି ବର୍ଷ ହୋଇଗଲେ । କେବଳ ଘଣ୍ଟାର ଦିନରାତି, ତିରିଷ ଦିନର ମାସ ଓ ବାର ମାସର ବର୍ଷ ଦିଣ୍ଡିକ ପରି ପ୍ରତୀୟମାନ ହୁଏ । ଏବେ ମୁଷା ବି ଭାରି ଖୁସିଥାଏ ଯେ ତିନି ଚାରି ମାସ ପରେ ତା ଖୁକରୀ ବଢ଼ିବ—ଅଧିକ ତାକୁ ମାଲୁମ ହଉଥିଲା ଯେପରି କିଛିଦିନ ଭିତରେ ସେ 'ବାପ' ବି ହୋଇଯିବ !

ବା'ଘର ଆଗରୁ ମୁଷା ଯଉଁ ବାବୁଙ୍କ ପାଖରେ ପାଇଟି କରୁଥିଲା, ମୁଷା ବାପ ତାଙ୍କଠାରୁ କେବେ ଦଶଟା ଟଙ୍କା କରଜ ନେଇ ଥିଲା । ଯେତେଦିନ ଯାଏ ସେ ତାଙ୍କ ନୌକରୀ କରୁଥିଲା, ତାକୁ ଏ ବିଷୟରେ ସେ କିଛି କହୁ ନ ଥିଲା । କିନ୍ତୁ ନୌକରୀ ଛାଡ଼ିଲା ବାଦ, ତାକୁ ଜଣା ନାହିଁ, କାହିଁକି ଏ କଥା ତାଙ୍କ ମନରେ ପଡ଼ିଲା । ସେ ମୁଷା ଦୁଆରକୁ ନିତି ପିଅଦା ପଠାଇ ତାକୁ

ବାସ କର ଦଅନ୍ତୁ ନାହିଁ । କଥା କ'ଣ କି—ଗାଁର କଏ କାଳେ ବାବୁଙ୍କ ସ୍ତ୍ରୀଙ୍କ କାନରେ ଫୋଡ଼ିଦେଲା, "ମୁଷାର ଗୋଟେ ମଇନା ଅଛି, ସେ ଭାରି ଶୁଭ ଲକ୍ଷଣୀ । ମୁଷା ଭାରି ଗରିବ ଥିଲା । କିନ୍ତୁ ମଇନା ଯେମିତି ତା ଘରେ ପାଦ ଦେଇଚି, ମୁଷାର ଭାଗ୍ୟ ଡୋରି ଫିଟିଲେ । ଆଜି ସେ ଦି ପଇସା ରଖିପାରିଚି । ଆମ ବାବୁଙ୍କ ହାତକୁ ସେ ଯଦି ଆସନ୍ତା, ତାହେଲେ ବାବୁଙ୍କ ସମ୍ପତ୍ତି ଅଦ୍ଭୁତ ହୁ ହୁ କରି ବଢ଼ି ଯାଆନ୍ତା ।" ମୁଷାକୁ ମଇନା ଦବା ପାଇଁ କହି ପଠାଲେ, କିନ୍ତୁ ସେ ମନା କଲା ।

ଦିନେ ମୁଷା ଷ୍ଟେସନକୁ ଯିବାବେଳେ, ଜଣେ ପିଅଦା ତାକୁ ନାଲି ଆଖି ଦେଖେଇ କହିଲା—"ଦେଖ, ଭଲ କଥାରେ ଶୁଣୁ ନାହୁଁ । ଏବେ ଏଣିକି ଜବରଦସ୍ତିର ଲୋଡ଼ା । ପାଣିରେ ରହି କୁମ୍ଭୀର ସାଙ୍ଗରେ ଶତ୍ରୁତା କରିବା କ'ଣ ଠିକ୍ ? ମଇନାଟା ଭଲରେ ଦେଇଦେ । ତୁ ଗରିବ ଲୋକ ବରେ, କାହିଁକି ଏତେ ହଇରାଣ ହଉ ?"

କିନ୍ତୁ ମୁଷା କାହାରିକି ଡରିବାର ପାତ୍ର ନୁହେଁ । ସେ ଟେଢ଼ା ଜୋରରେ କହିଲା—"ଆସିଲା ଏଠି ଖୋସାମଦିଆ କଥା କହିବାକୁ । ଯା, ମୁଁ ଦେବି ନାହିଁ । ମୋର କ'ଣ କରିବ, ଯା !" ମୁଷାର ଏ ଔଦ୍ଧତ୍ୟ ଜବାବ ଶୁଣି ପିଅଦାର ମନ ବୋଧ । ସେ ଆଉ କିଛି ନ କହି ଧୀରେ ଧୀରେ ଗ୍ଲଲିଲେ । ଏଣେ ମୁଷା ବି ଷ୍ଟେସନକୁ ଗ୍ଲଲିଲେ ।

ଷ୍ଟେସନରୁ ଫେରି ମୁଷା ଦେଖେ ତ ପିଞ୍ଜରାରେ ମଇନା ନାହିଁ । ଲୁହାର ପିଞ୍ଜରା ଖାଲି ପଡ଼ିଚି । ସାରା ଦୁନିଆଟା ମୁହୂର୍ତ୍ତକ ଭିତରେ ବଦଳି ଗଲା । ତା ମଥା ଭିତରଟା କଣ ହେଇଗଲା— ଅକଲ୍ ଗୁଡ଼ୁମ୍ !

'ଯମୁନା ଗୋଟେ କଣରେ ବସି ଭଙ୍ଗା ନାଲଟଣଟା ସଫା କରୁଥିଲା । ତାକୁ ପଚ୍ଚାରିବାରୁ ସେ କହିଲା, ଜମୀଦାରଙ୍କ ପିଅଦା ଆସି ପିଞ୍ଜରାରୁ ମଇନାକୁ ଅମଠେଁ ଛଡ଼େଇ ନେଇଗଲା ।······କହୁଁ କହୁଁ ଯମୁନାର ବାକ୍‌ଶକ୍ତି-ରୋଧ ହୋଇଗଲା । ମୁଷାର କଳିଜା ଭିତରଟା ଥରି ଗଲା, ଜଡ଼ ପାଲଟି ଗଲା । ତା ପରେ କମ୍ପିବାକୁ ଲାଗିଲା, ଠିଆ ହଉଁ ହଉଁ ଦୁଲ୍ କରି ତଳେ ପଡ଼ିଗଲା । ଯମୁନା ଚିତ୍କାର କରି ଉଠିଲା ।

ମୁଷା ଭାବୁଥିଲା—କିଛିଦିନ ପରେ ତାର ପିଲାଟିଏ ହବ, ପିଞ୍ଜରା ଝୁଲରେ ଟଙ୍ଗା ହୋଇଥିବ, ମଇନା ଡାକୁ ଥିବ, ପିଲାଟି ପିଣ୍ଡାରେ ଶୋଇ ଖେଳୁଥିବ, ମଇନାର ଡାକ ଶୁଣି ହସି ହସି ଗଡ଼ି ଯାଉଥିବ ଆଉ ଏ ଦି ପରାଣୀ ଏ ଦୃଶ୍ୟ ଦେଖି ପୁଲକିତ ହୋଇ ଯାଉଥିବେ । କିନ୍ତୁ ହାୟ୍ ନିଷ୍ଠୁର ବିଧାତା ! ଏହା କ'ଣ ସମ୍ଭବ ? —ଏହି ସବୁ ସୁଖ-ସ୍ୱପ୍ନ ସ୍ୱପ୍ନ ହୋଇ ରହିଗଲା !

କିଛି ଦିନ ପରେ ଗାଁ ଲୋକେ ଦେଖିଲେ—ମୁଷାର କୁଡ଼ିଆଟି ଶୁନ୍‌ଶାନ୍, ପିଞ୍ଜରା ଖାଲି ପଡ଼ିଚି, ଘରୁ ମାଟି ଅଧେ ଖସି ପଡ଼ିଲାଣି; ଯମୁନା, ମୁଷା, ତା ମା କୁଆଡ଼େ ପଳେଇଲେଣି । ଗାଁ ଲୋକଙ୍କର ବୁଝିବାକୁ ବେଶୀ ଡେରି ହେଲା ନାହିଁ ଯେ ମଇନା ବିନା ମୁଷା ଓ ଯମୁନାକୁ ଏ ଘର ଶୂନ୍ୟ ମାଲୁମ ହେଲା । ଏଥିପାଇଁ ମନ କଷ୍ଟ କରି ସେମାନେ ଢେର ଦୂରକୁ କଉଁଠିକି ଚାଲିଗଲେ । କେତେକ ମୁଷା ପାଇଁ ସହାନୁଭୂତି ପ୍ରକାଶ କରନ୍ତି ତ କେତେକ ମୁହଁ ବିକୃତ କରି କହି ଉଠନ୍ତି 'ପାଗଳ' !

( ଭଦ୍ରକ )

# ଅତିଥି

ଗୁଡ଼ାସ ଡାକ ବଙ୍ଗଳା । ବଙ୍ଗଳା ସାମନାକୁ ଛତର୍ ଝାଙ୍କୁଳା ବରଗଛଟା । ବହୁ ଦିନର ପୁରୁଣା । ହାତୀ ଶୁଣ୍ଢ ପରି ଓହଳମାନ । ଚାରିପଟେ ତାର ନାଗ ସାପ ପରି ବେଢ଼ି ରହିଚନ୍ତି । ବସନ୍ତ-ଆଗମନର ଚିହ୍ନ ଚାରିଆଡ଼େ ଫୁଟି ଉଠିଲାଣି । ନୂଆ ଆଶାରେ, ପୁରୁଣା ବୁଢ଼ା ହଳଦି ବର୍ଣ୍ଣ ପରି ପାକଲା ପତ୍ର-ଗୁଡ଼ା ଝଡ଼ି ପଡ଼ିଲାଣି । ଏ ତ ସଂସାରର ନିୟମ—ପୁରୁଣାକୁ ଛାଡ଼ି ନୂଆ ଗ୍ରହଣ କରିବାର ଅଭିପ୍ରାୟ ଓ ଅଭିଳାଷ ସମସ୍ତିଙ୍କର—କି ପଶୁପକ୍ଷୀ କି ବୃକ୍ଷଲତା, ସେଠି ମଣିଷ କଥା ବା ପଚ୍ଛରେ କିଏ ?

ଗଛ ପାଖକୁ ଲଗି ଦିଟା ବଡ଼ ଉଇ ହୁଙ୍କା । ଗଛ ସାଙ୍ଗରେ ତାଳ ଦେଇ ଏମାନେ ବି ବଢ଼ିବାରେ ଲଗିଚନ୍ତି । ଦିନରେ ତାଙ୍କର ଡର ଭୟ ନ ଥାଏ । କାଳ ରାତ୍ର ଘୋଟି ଆସିଲେ, ଆଙ୍କୁ ଶନି ଦଶା ପଡ଼େ । କାଳିଆ ଦାଲ୍ଲ ଦାଲ୍ଲ ଭାଲୁଗୁଡ଼ାକ କଉଁଠି ଚୋର ପରି ଛପି ରହିଥାନ୍ତି । ନିଶାଗମର ସୁଯୋଗ ଉଣ୍ଡି, ଉଇ ଖାଇବାରେ ମନର ଅଭିମାନ ତୁଟାଇ ନିଅନ୍ତି ।

ଠିକିଏ ଛଡ଼ାରେ ଡାହାଣ ପଟକୁ ଅଣଓସାରି ରାସ୍ତାଟିଏ । କଚ୍ଚା ରାସ୍ତା । ବର୍ଷାଦିନେ ଆଣ୍ଠିଏ କାଦୁ । ଗୋଡ଼ ଉଠାଇଲ ବେଳକୁ ପିଚ୍ କରି ମେଞ୍ଚେ କାଦୁଅ ଅଣ୍ଠାଯାଏ ଉଠି ଆସେ । କିନ୍ତୁ ଆଜିକାଲି ତ ନିଦାଘ ଖରାଦିନ । ସେଇଥିଲାଗି, କି କଣି, ତାର ବି

ଗନ୍ଧ କମ୍ ହୁଏନି । ରାସ୍ତା କଡ଼କୁ ଦୁବ ଘାସ ମାଡ଼ି ଯାଇଛି । ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଠାଣ ଖରାରେ ସିଝି ହଳଦିଆ ପଡ଼ି ଗଲାଣି । ଠାଏ ଠାଏ ବେଙ୍ଗ ବାଇଗଣ ବୁଦା । ବାଟରେ ଯିବାବେଳେ କେତେକଙ୍କ ଗୋଡ଼ରେ କଣ୍ଟା ଲାଗିଯାଏ । ସ୍କୁଲ ନଜାଣି ବାଟର ଦୋଷ ଫଳରେ, ସେଇ ସାତେଭାଇ ନସ୍ୱାସ୍ଥ୍ୟ ବଂଶର ନିର୍ମୂଳ ହୁଏ । ଯୋର ଯାର ମୁଲକ ତାର ! ତା ସାଙ୍ଗ ଭାଇମାନେ ଏ ଦୁରବସ୍ଥା ଦେଖି, ତା ପାଖକୁ ଲାଗି ଆସନ୍ତି । ସମସ୍ତେ ଭିଡ଼ି ଯାଆନ୍ତି ଶତ୍ରୁ ଦମନ କରିବାକୁ ।

ରାସ୍ତା ପାଖରେ ସ୍ୱଚ୍ଛତୋୟା ବଂଶୀଧାରା କଳ କଳ ନିନାଦିନୀ ନଈଟିଏ—ବଂଶୀଧାରା ନଈ । ତାକୁ ଦେଖିବା ମାତ୍ରକେ ହଠାତ୍ ମନେ ପଡ଼ିଯାଏ ଭଦ୍ରକର ସାଲନ୍ଦୀ ନଦୀ—ଦିହିଙ୍କ ଭିତରେ ସାମଞ୍ଜସ୍ୟ ଅଛି ଢେର । ଡାକ ବଙ୍ଗଳାରୁ ଶ୍ରେଷ୍ଠ ରାସ୍ତାଟିଏ ପଡ଼ିଛି ନଈକି । ଗାଁ ଗଣ୍ଡା ତ ମୋଟେ ନାହିଁ । ବାରୁ ବର୍ଷାମାନେ ଆସିଲେ, ପାଣିର ଲୋଡ଼ା ହୁଏ । ଏଇ ବାଟେ ବରାବର ନଇରୁ ପାଣି ନେଇ ନେଇ, ମନକୁ ମନ ବାଟଟିଏ ଫିଟି ଯାଇଛି । ନୂଆ ଲୋକ ପକ୍ଷରେ ସେ ବାଟରେ ଯିବା କାଠିକର ପାଠ ।

ନଈ କୂଳରେ ଘାଟଟିଏ । ଦି ପଟର ଦୃଶ୍ୟ ଜାଗା ସଫା ସୁନ୍ଦର । ତା ଛଡ଼ା, ଘୂରିଆଡ଼େ ଅରମା । ବଣ ଜଙ୍ଗଲ । କଉଁଠି ବାଇଜ ହାଣ୍ଡି ଟେ । କଉଁଠି ଏଣୁତେଣୁ ଡାଳ ପତର ଗୁଡ଼ା । ଠାଏ ଦାନ୍ତକାଠିଗୁଡ଼ା ଜମା ହୋଇଛି । ଠାଏ ଠାଏ ଅଇଁଠା ପତର ଓ ଶିରି କନା ବାନ୍ଧୁଡ଼ି ହୋଇ ପଡ଼ିଛି ।

କୂଳକୁ ଲାଗି ଓ ଆଡ଼ ଉପରେ ଡାଳି ବୁଦା ଗୁଡ଼ାକ । ଖରାଦିନରେ ମୁରୁକୁଟିଆ ମାରି ଗଲାଣି । ତା ମଝିରେ ଜାଗେ ଜାଗେ ଅରଖ ଗଛଗୁଡ଼ା ହସି ଉଠୁଚନ୍ତି ।

ପାଣୀ ଶୁଖିଗଲାଣି । ଏ ପାଖରେ ଡବର ଡବର ପାଣୀ ଥାଉଛିଏ ତ ଅନ୍ୟପାଖରେ ସରୁ ପାଣୀ ଗାରେଛିଏ । ମଝିରେ ବାଲିରେ । ନାଳି ଟୋକ୍ୱା ଡେଙ୍ଗା ବଗ ପଡ଼ିଲେ । କାଇଁ ଫୁଲ ପରି ଧୋବ ଫରଫର । କାଉଁଠ ଉଡ଼ି ଆସି, ସେଇ ବାଲିରେ ମଉଜରେ ବସି ମାଛ ଖାଉଚନ୍ତି । ଦଳରୁ ଛାଡ଼ିଆସି ଆସି, ଡେଙ୍ଗା ବଗୁଟେ ପାଣିରେ ଠିଆ ହୋଇଛି ଏକ ଧ୍ୟାନରେ—ମାଛ ସେଇ ବାଟେ ଗଲେ ଟୋଅକୁ କରି ଗିଳିଦବ । ଗାଉଁଲି ପାଣିକୁଅ ଗୋଧୋଇବାରେ ବ୍ୟସ୍ତ । ଖଣ୍ଡେ ଦୂରରେ ଦଳେ ବଣି ରାଜହଂସ ମନ ଖୁସିରେଁ ପହଁରି ବୁଲୁଚନ୍ତି ।

ଦ କୁଦା ମାଡ଼ିଦେଲେ ଆମ୍ବ ତୋଟାଟିଏ । ଦ ଗୁରୁଟା ଗଛ ଛଡ଼ା ସବୁ କଟିରେ ଝଡ଼ି ଗଲେଣି । ତୋଟାଟି ଆମ୍ବ ତୋଟା ହେଲେ କଅଣ ହବ, ପଣସ ଉମିର ପିଠାଅଳ୍ପେ ଓ ଶିମିଳି ଗଛ ଗୁଡ଼ପଟେ ଡେଉର ହୋଇଚନ୍ତି । ପଣସ ଗଛ ଅଗରୁ ମୂଳ ଯାଏ କଣାରେ ଯାଇ ଯାଇଚି । ନାଲି ଟହ ଟହ ଶିମିଳୀ ଫୁଲଗୁଡ଼ାକ ପରି ବଣିଗ୍ରହର ସୌନ୍ଦର୍ଯ୍ୟ ବାଳିଲୁ ଅଧିକ ବଢ଼ାଇ ଦେଇଚି । ଯାହାର ଶିର ଦେଖି ନ ପାରି, ପାହାଡ଼ ଉପରେ ପଳାଶ ତାର ରୂପ-ଜେବର ସମ୍ଭାର ନେଇ ଅଳ୍ପ ବାହୁଡ଼ି କରୁଚି । କିନ୍ତୁ ବସନ୍ତ-ସାଥୀ ମଳୟଦୂତ ମଧୁରକଣ୍ଠି କଳା କୋକିଲର କାହାର ପ୍ରତି ଭ୍ରୂକ୍ଷେପ ନାହିଁ । ସେ ମନ ଆନନ୍ଦରେ ତାଳ ଦେଇ ପଞ୍ଚମ ସ୍ୱରରେ ଡାକି ଉଠୁଚି—'କୁ' 'କୁ' 'କୁହୁ' ।

\+ \+ \+ \+

ସୂର୍ଯ୍ୟ ମା କୋଳକୁ ଡେଇଁ ପଡ଼ନ୍ତି । ବେଳ ବୁଡ଼ିଯାଏ । ଦିନ ସରିଯାଏ । ପଶୁପକ୍ଷୀ ହେଇଁଆର ବସାକୁ ଚାଲି ଯାଆନ୍ତି । ଅନ୍ଧାର ମାଡ଼ି ଆସେ । ଧରା ବକ୍ଷରେ ଗଲେଶଏର କଳା ପର୍ଦ୍ଦା ଟଙ୍ଗିଯାଏ । ଏଣେ ପାଖ ଗାଁରେ ଆଲୁ ଜଳି ଉଠେ । ତୁଳସୀ ଚଉଁରା ମୂଳରେ ସଞ୍ଜ

ବଳଗା ଦେଇ ବାଲା ଶଙ୍ଖ ଫୁଙ୍କେ । ସେ ସୁର ଲହରୀ ପବନରେ ଏ ପାରକୁ ଭାସି ଆସେ । ଦେବ ମନ୍ଦିରର ସନ୍ଧ୍ୟା ଆରତିର ଘଣ୍ଟା ଧ୍ୱନି ଗଗନ ପବନ ଦୋହଲାଇ ବାଜି ଉଠେ । କାଳ ରାତି ଘୋ ଘୋ ଗର୍ଜନ କରି ମାଡ଼ି ଆସେ । ଭୀଷଣ ମୂର୍ତ୍ତି ତାର । ମଣିଷର କିନ୍ତୁ ଏ ସବୁକୁ ଖାତିର ନ ଥାଏ ।

\+ \+ \+ \+

ଝେଁଝେଁଟିଆ ଅନ୍ଧାର ! ରାତି ପାହେ । ଫରଚା ହୁଏ । ନେହମାଳିଆ ପବନ ଶିରି ଶିରି ହୋଇ ବହି ଆସେ । କୁକୁଡ଼ାର ରାବ ଗାଁ ମୁଣ୍ଡ ସେ ପଟରୁ ଶୁଣାଯାଏ । କୁଆ ପଟଳ 'କା' 'କା' କରି ଘର ଉପର ଦେଇ ଉଡ଼ି ଯାଆନ୍ତି ।

ନିଦ ଭାଙ୍ଗିଯାଏ । ଶୋଇବାକୁ ଆଉ ଇଚ୍ଛା ହୁଏନା । ଗୁହୁଁ ଗୁହୁଁ ଦିବାଲୋକ ଘୋଟି ଆସେ । ଦିନ ହୁଏ, ସୂର୍ଯ୍ୟ ହସି ହସି ଚାଲି ଆସନ୍ତି । ଲୋକେ ଯେଝାର କାମକୁ ବାହାରି ପଡ଼ନ୍ତି ।

\+ \+ \+ \+

ସେ ଦିନ ବଡ଼ି ସକାଳୁ ଉଠିଲି । ନଈକୁ ଯାଇ ଅଚ୍ଛା ସ୍ନାନଟାଏ କରି ଆସିଲି । ଜଳଖିଆ ଦିଟା ପାଟିରେ ପୂରାଇ ଦେଇ ବାହାରି ପଡ଼ିଲି । ସୂର୍ଯ୍ୟଦେବ ଆକାଶ ଉପରକୁ ଉଠି ଆସିଲେଣି । କାଳ ବିଳମ୍ବ ନ କରି ଗନ୍ତବ୍ୟସ୍ଥାନ ଅଭିପ୍ରାୟରେ ଗତି କଲି ।

ସେହି ଟା କରୁ ଅର୍ଦ୍ଧୋଦ୍ୟାରିଆ ରାସ୍ତାଟିଏ । ବଙ୍କା ଟଙ୍କା ହୋଇ ନଇଁ ବଣ ଭିତର ଦେଇ କୁଆଡ଼କୁ ଚାଲି ଯାଇଛି । ମୁଁ ସେ ଚାଲିବାଟରେ ଲାଗିଲି । ଚାଲି ଚାଲି ଗୋଡ଼ ଥକି ଗଲା, ଗଛ ମୂଳରେ ବସି ଦଣ୍ଡେ ଥକା ମାରେ ।

ଠିକାଏ ଗଲେ ଘୁରି ଗ୍ଲଲ୍। ବାଟରେ କେତେ ଲୋକଙ୍କ ସାଙ୍ଗରେ ଭେଟ ହୁଏ। କୌତୁହଳ ପରବଶ ହୋଇ ସେମାନେ ମୋ ମୁହଁକୁ ଗ୍ଲହିଁ ରହନ୍ତି। ଏକେ ତ ଜଙ୍ଗଲୀ—ତା'ପରେ ପୁଣି ଅଶିକ୍ଷିତ ଓ ଅଜ୍ଞ ଜନ୍ମ। ଆମ ପରି ଲୋକଙ୍କୁ ଦେଖିବାର ସୁଯୋଗ ତାଙ୍କ ଜୀବନରେ ଅସି ନ ଥାଏ। ତାଙ୍କ ଭିତରୁ କେହି କେହି ହେମନ୍ତ କରି ମତେ ପଗ୍ଲରି ଦିଅନ୍ତି—"ବାବୁ, କଉଁଠିକି ଯାଉଚ ?" ମୋ ଠାରୁ ତାର ଯଥାର୍ଥ ଜବାବ ପାଇ, ତାଙ୍କ ଗାଁରେ ସିଧା ଗ୍ଲଲି ଯାଆନ୍ତି। ମୁଁ ବି ଅଗେଇ ଗ୍ଲଲି।

ସେ ଦିନ ହାଟ ବାର। ବଣ ଜଙ୍ଗଲରେ ଯିବାର ଅଭ୍ୟାସ ନ ଥାଏ ମୋର। ଡର ହଉଥାଏ, କାଳେ ବାଘ ଭାଲୁ ଗ୍ଲଲି ଅସିବେ—ବଣ ଜଙ୍ଗଲ ଜାଗା। ଲୋକ ଚଳପ୍ରଚଳ ଯୋଗୁଁ ଅଠ ପଣ ଭୟ ମୋର ଭାଙ୍ଗି ଯାଉଥାଏ।

\+ \+ \+ \+

ବୈଶାଖ ମାସ। ଭିଦ୍‌ଭିଦିଆ ଦି ପହର। କାଠଫଟା ଖରା। ମୁଣ୍ଡଫଟା ଖରା। ପାଦେ ଗ୍ଲଲି ହଉ ନ ଥାଏ। ବାଧ୍ୟ ହୋଇ ଗ୍ଲଲିଥାଏ। ଦେହକୁ ଗୋଡ଼ ଆଉ ଟେକିଲା ନାହିଁ। ଦେହ ଅବଶ ହୋଇଗଲା। ତଣ୍ଟି ମାଡ଼ି ଆସିଲା। ଶୋଷ କଲାଣି। ମୁଣ୍ଡ ଭିତରଟା ଝାଉଁପ ହୋଇଗଲା। ଦେଖିଲି—ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠି ଅସିଲେଣି।

ନାଗୁଡିଆ ଜାଗା। ଗଛ ପତ୍ର କିଛି ନାହିଁ ଗୋଟେ ହେଲେ। ରାସ୍ତା କଡ଼ରେ ଗୋଟିଏ କରଞ୍ଜିଗଛଟେ ଥିଲା। ତା'ରି ମୂଳରେ ଯାଇ ବସି ପଡ଼ିଲି ଥକାରେ। ହାଲିଆ ହୋଇ ଯାଇଥାଏ ସେତେବେଳକୁ। ପେଟ ଭିତରେ ଭୋକ ଜଳୁଥାଏ। ସେହି ଗଛଟି ତଳେ

ଝଲା ଶିରଶିର ପବନ ଆସି ମୋ ଦେହକୁ ବେଳେ ବେଳେ ଛୁଇଁ ଦେଇ ଯାଉଥାଏ । ବସୁବସୁ ଝିମ୍‌କିଏ ଲାଗିପଡ଼ୁଲି । ଆଖି ବୁଜିଗଲା ।

କେତେବେଳକେ ଜଣେ ଲୋକ ଆସି ଡାକିଲା—"ବାବୁ, ଏଠି କାହିଁକି ପଡ଼ିଛ ?"

ମୋ ନିଦ ଭାଙ୍ଗିଗଲା । ଚାହିଁ ଦେଖେ ତ ସେଇ ଲୋକଟି, ଯା ସାଙ୍ଗରେ ଆସିବାବେଳେ ବାଟରେ କଥା ହେଉଥିଲି । ଭୋକରେ ପେଟ ଜଳି ଯାଉଥାଏ । ପଚାରିଲି—"ଏଠି ଖାଇବାକୁ କିଛି ମିଳିବ ?"

ସେ କହିଲା—"ନାଁ ବାବୁ ! ଏ ବଣୁଆରେ କଅଣ ମିଳିବ ? ଗାଁକୁ ଗଲେ ଚୁଡ଼ା ମିଳିପାରେ ।"

ପଚାରିଲି—"ଗାଁ କେତେ ଦୂର ?"

"ଛଅ ମାଇଲ ।"

"ଏଠି କେଉଁଠି ପାଣି ମିଳିବ ନାହିଁ ?"

"ନାଁ, ଏଠି ପାଣି ମିଳିବ ନାହିଁ । ମାଇଲିଏ ଅନ୍ତରରେ ଗୋଟେ ନାଳଟେ ଅଛି । ସେ ବି ଶୁଖିଲା । ବାଲି ଖୋଳିଲେ ପାଣି ବାହାରିବ । ଆପଣ କ'ଣ ପାଣି ପିଇବେ ?"

"ହଁ, ଭାରି ଶୋଷ ଲାଗୁଛି । ଭୋକରେ ବି ପେଟ ଜଳି ଯାଉଛି । କଣ କରିବି କିଛି ବୁଝି ବାଟ ଦିଶୁନାହିଁ । ଚାଲ, ସେ ନାଳ ପାଖକୁ ଯିବା । ଏଠି କଣ ମରିବି ନା ? ଯା ମିଳିବ ।"

ଏହା କହି, ଦୁହେଁ ନାଳ ପାଖକୁ ସେହି ମୁଣ୍ଡଫଟା ଖରାରେ ଗଲୁ । ସେ ଲୋକଟି ବାଲିରେ ଗାତଟିଏ ଖୋଳିଲା । ଗୋଟେ କ

ଟେଛନ୍ତୁ ବଡ଼ ବଡ଼ ପତର ଆଣି ଠଙ୍ଗା କଲା । ସେଥିରେ ମତେ ପିଇବାକୁ ପାଣୀ ଦେଲା । ମୁଁ ଆଖି ବୁଜି ପାଣୀ ଚକ ପିଇ ଦେଲି । ଖୁବ୍ ତୃପ୍ତି ଅସିଲା । ଏତେଦିନ ହାଏ ତ ଏମିତ ପାଣୀ ମୁଁ ପିଇ ନ ଥିଲି ! ଏତେ ପଇସା ଖର୍ଚ୍ଚ କରି ତ ସୁସ୍ୱାଦୁ ପାନୀୟ ଅଣୁ । କିନ୍ତୁ ସେଥିରେ ତ ହେଲେ ଏମିତ ସନ୍ତୋଷ ଲାଭ କରି ନ ଥିଲି । ଆଜି ଏ ଧାମାନା ବାଲି ଖୋଳା ପାଣୀ ମୁନ୍ଦାକରେ ଏ ତୃପ୍ତି କାହିଁକି ? ଭାବିଲି—ଏ ପାଣୀ ଦେଇ ସନ୍ତୁ ମନରେ ଓ ପବିତ୍ର ହୃଦୟରେ ଦାଅ ହେଇଚ ! ସଂସାରରେ ଏହାଠାରୁ ବଳି କିଛି ଜିନିଷ ନାହିଁ ।

ତାପରେ ପଚ୍ଛରିଲି—"ଖାଇବା ପାଇଁ କିଛି ମିଳିବ ନାହିଁ ?"

"ବାବୁ ! ଏଠି କଣ ମିଳିବ ? ଚ୍ଛାଲ, ଏଇ ଯଉଁ ଗାଁଟା ଦେଖା ଯାଉଚ, ସେଇଟା ଆମ ଗାଁ । ଏଇ ବାଲ ଦ କାଅରି ଡେଇଁ ପଡ଼ିଲେ ହେଲା । ଆମେ ତ ଗରିବ ଲୋକ । ଅପଣ ହଉଚନ୍ତି ବାବୁଭାୟା । ଆମ ଘରେ ଯା ଥିବ, ଦେବ୍ତ ଆପଣଙ୍କୁ ଦେବୁ ।"

ତାର ଏ ଅନୁରୋଧଟା ଏଡ଼ି ପାରିଲି ନାହିଁ । ଏହି ଅବଶ ଦେହ ଓ ମନ ନେଇ ତା ପଛେ ପଛେ ଚାଲିଲି । ବାଲିରେ ଚାଲି ଚାଲି ଗୋଡ଼ ଥକିଗଲା—ତେବେ ବ ଗାଁ ପଡ଼ିଲା ନାହିଁ ।

ତା ଉପରେ ବିରକ୍ତ ହେଇ କହିଲି—"ତତେ କଣ ଥଟା କରିବାକୁ, କେହି ଲୋକ ମିଳୁ ଥିଲେ ନାହିଁ ନା ? ମତେ ମିଛଟାରେ ଏତେ ବାଟ ଏ ଖରାବେଳ ନେଇ ଆସିଲୁ ?"

ସେ କହିଲା—"ବାବୁ ! ଆମ ଗଉ ଏଠିକି ଦ ମାଇଲ । ଏ କଥା ଆପଣଙ୍କୁ କହିଥିଲେ, ଆପଣ କ'ଣ ଆସିଥାନ୍ତେ ? ସେଇ

ତଳେ ବାଲ୍‌ଟିରେ ଛଟେ ଏଟେ ହୋଇ ଥାଅନ୍ତେ । ଆଉ ବେଶୀ ବାଟ ନାହିଁ, ବାବୁ ! ମୋ ହାତ ଧରନ୍ତୁ । ଜଲ୍‌ଦି ଚାଲିଯିବା ।"

ତା ହାତ ଧରିଲି । ଚାଲିବାକୁ ଲାଗିଲି ।

ତା ଘରେ ପହଞ୍ଚିଲି । ମତେ ଦାଣ୍ଡ ପିଣ୍ଡାରେ ବସାଇ ଦେଇ ସେ ଘର ଭିତରକୁ ଗଲା ।

•

ମାଟିର କୁଡ଼ିଆଟିଏ । ଗୋବରରେ ଲିପା ହୋଇଛି । କାନ୍ଥରେ ଝୋଟି ଦିଆ ହୋଇଛି । ଗୁହଅଳି ସଫା ସୁତରା । ଗୁହାଳଟିରେ ଗୋଟିଏ ଗାଈ ଛେଳି ମାଡ଼ି ହାଉଛି । ଅଗେଁ ମୁହାଁଏ କଣରେ ଛେଇ ଥାଉଛି । ଘର ସାମନାରେ ସାଗ ମଦା ଦିଆ । ତା ପାଖକୁ ବେଙ୍ଗ୍ରି, ଜହ୍ନି, କାକୁଡ଼ି ଓ ଲଙ୍କା ଗଛ ଦିଆ ହୋଇଛି । ଗୋଟେ କଡ଼କୁ ଯୁଆଳି ଗଛଟେ । ତା ପାଖକୁ ଅଳ୍ପ ଛୋଟ ତଳାଟେ ।

ଟିକିଏ ପରେ ସେ ଭିତରକୁ ଆସି କହିଲା—"ବାବୁ ! ହାତ ଧୁଅନ୍ତୁ । ଏଣିକି ପଖାଳ ବଢ଼ା ହେଲାଣି ।"

ଗୋଟେ ଡାଳଣରେ ଦୁଆର ପାଖରେ ପାଣି ଲୋଟାଏ ଥାଏ । ମୁଁ ହାତ ଧୋଇ ଭିତରକୁ ଗଲି ।

ଗୋଟେ କଂସାରେ କଂଟେଇ ପଖାଳ । ଉପରେ ଦହି ପଡ଼ିଛି । ଗୋଟେ ପତରରେ ଲୁଣ ଓ ଲଙ୍କା । ଥାଳିଆଟିରେ ପୋଡ଼ ସାଗ ଖରଡ଼ା ଟିକିଏ । ପଥୁରି ବାଟିରେ ଖଟା ।

ସେ ମୋ ପାଖରେ ଛିଡ଼ା ହୋଇଥାଏ । ବୋଧହୁଏ ମୋ ମୁହଁର କିଛି ପରିବର୍ତ୍ତନ ଦେଖିଲା କି କଣ କହି ଉଠିଲା—"ବାବୁ,

ଆମେ ଗରିବ ଲୋକ । କଣ ପାଇବୁ ଆମେ ? ଯା ପଖାଳ ଦେଇ ଥିଲ, ଦେଲୁ । ମନରେ କିଛି ଧରିବେ ନାହିଁ ।"

ମତେ ଭାରି ଲାଜ ଲାଗୁଥାଏ । ଦି ଗୁର ଗୁଣ୍ଡା ଖାଇ ଦେଇ, ତୁରଣି ଢୋକେ ପିଇଦେଲି । ଆଜି କୋଡ଼ିଏ ବର୍ଷ ପରେ ଏହି ପ୍ରଥମ ପଖାଳ ଖାଇବା । ଇସ୍କୁଲ ଛାଡ଼ିଲା ଦିନଠୁ ତା ସାଙ୍ଗରେ ସମ୍ପର୍କ ନାହିଁ । ସୁକସି କଲେ କଣ କେହି ପଖାଳ ଖାଇବାକୁ ମନ ବଳାଏ ? ଆଜି କିନ୍ତୁ ମତେ ଏ ପଖାଳ ଟୋକେ ଏତେ ତୃପ୍ତି ଦେଲା, ତାହା ମୁଁ ବାକ୍ୟରେ ପ୍ରକାଶ କରି ପାରିବି ନାହିଁ । ଶହେ ଶହେ ଟଙ୍କା ଖର୍ଚ୍ଚ କରି ଆମେ ଯେଉଁ ସନ୍ତୋଷ ନ ପାଉଁ, ଆଜି ଏହି ସାମାନ୍ୟ ପଖାଳ ତେଣ୍ଡି କରେ—? ହାୟ ଭଗବାନ ! ତୋ ଲୀଳା ବିଚିତ୍ର !

ଖାଇ ସାରିଲା ପରେ, ସପଟିଏ ପିଣ୍ଡାରେ ପାରିଦେଲା । ଥକାରେ ଆଖି ଭାରି ମାଲୁମ ହୁଉଥାଏ । ବସୁ ବସୁ ଶୋଇ ପଡ଼ିଲି । କେତେବେଳକେ ସେ ମତେ ଡାକିଲା—"ବାବୁ ! ଉଠିବ ନାହିଁ କି ?"

ଧଡ଼ପଡ଼ କରି ଉଠିପଡ଼ି ଘଡ଼ି ଦେଖେଁ ତ ଗୁରଟା—ଟେଣେ ସରକାରି କାମ ଯେ ମାରି ହେବ । ଶୀଘ୍ର ଚାଲିବି ଯିବ ।

ହଠାତ୍ ଯୋତାଟା ଗଳାଇ ଦେଖେଁ ତ, ତା ଫିଅଟି ପାଖରେ ଛିଡ଼ା ହୋଇଛି । ମନି ବେଗରୁ ନୋଟଟିଏ ବାହାର କରି ତା ହାତରେ ଗୁଞ୍ଜି ଦେଲି । ଲୋକଟା କହି ଉଠିଲା—"ବାବୁ ! ଆମର ଏ କଣ ହବ ? ଆମେ ଯେ ଗରିବ !"

ତା' କଥା ଶୁଣିବାକୁ ମତେ ବେଳ ନ ଥିଲା । ମୁଁ ଏକା ଡ଼ିଅଁ ଦେଲି ଘଡ଼ଙ୍କ ଉପରେ । ସେ ଦୌଡ଼ି ଦୌଡ଼ି ଆସି ଘଡ଼ଙ୍କ ଉପରେ ମୁଣ୍ଡି ଆଟିଏ ମାରି କହିଲା "ବାବୁ ! ରେବିକୁ ଭଗବାନ ସାହା !"—ମୁଁ ପୂର୍ବ ପରି ରହିଲି ।




Printed by G. C. Mahapatra, Gopinath Press, Bhadrak. 1941.

